ପଦ ନିରର୍ଥକ ଭାବରେ ଅନେକ ସ୍ଥଳରେ ଓଡ଼ିଆ କବିତାରେ ଦେଖାଯାଏ । ଯେଉଁ କବିମାନେ ପଦରଚନା ସମୟରେ ଅକ୍ଷର ଓ ମାତ୍ରା ଦୃଷ୍ଟିରୁ ଯତିପାତର ଅସୁବିଧାର ସମ୍ମୁଖୀନ ହୁଅନ୍ତି, ସେମାନେ ବାଧ୍ୟ ହୋଇ ଉପର୍ଯ୍ୟୁକ୍ତ ନିରର୍ଥକ ପଦଗୁଡ଼ିକୁ ସ୍ୱ ସ୍ୱ କବିତାରେ ବ୍ୟବହାର କରିଥାନ୍ତି ।

କବି ଜଗନ୍ନାଥ ଦାସ ଏଭଳି ନିରର୍ଥକ ପଦ ପ୍ରୟୋଗ କରି, ଯେନତେନ ପ୍ରକାରେଣ ପାଦପୂରଣ କରିଥିବାର ଦୃଷ୍ଟାନ୍ତ ଭାଗବତରୁ ପ୍ରାୟ ମିଳେ ନାହିଁ । ମାତ୍ର ମହାଦେବ ଦାସଙ୍କ ରଚନା ଦ୍ୱାଦଶ ସ୍କନ୍ଦରେ ପାଦ-ପୂରଣ ଉଦ୍ଦେଶ୍ୟରେ 'ଯେ' ର ପ୍ରୟୋଗ ଅନେକ ସ୍ଥଳରେ ଦେଖାଯାଏ । ଉଦାହରଣ ସ୍ୱରୂପ ଦ୍ୱାଦଶ ସ୍କନ୍ଦର ପ୍ରଥମ ଅଧ୍ୟାୟରୁ କେତୋଟି ଉଦାହରଣ ଏଠାରେ ଉଦ୍ଧୃତ ହେଲା—

"ସେ ନାରାୟଣ ପାଦେ ମୁହିଁ । ଶରଣ୍ୟପାଇ ଯେ ଅଛଇ ।।"

× × ×

ସୂତ କହନ୍ତି ଯେ ଆନନ୍ଦେ । × × ×<br>
ତା'ସୁତ ଅଜ ଯେ ପାରୁଣ । × × × ×<br>
ସୁର ଯେ ଆବର ଅର୍ବୁଦ । × × × ×<br>
ଚନ୍ଦ୍ରଭାଗା ଯେ ସିନ୍ଧୁ ତଟ । × × × ×<br>
କୁରୁକ୍ଷେତ୍ର ଏ ଯେ ଅଯୋଧ୍ୟା । × × ×<br>
ଜ୍ଞାନ ଯେ ଧର୍ମ ନ ଦେଖଇ । × × ×"

କେବଳ ଏହି ନିରର୍ଥକ ପଦ-ଯୋଜନା-ରୂପକ ଏକମାତ୍ର ଦୋଷରୁ ମହାଦେବ ଦାସ ଓ ଜଗନ୍ନାଥ ଦାସଙ୍କର ଭାଷାଗତ ତାରତମ୍ୟ ଜଣାପଡୁଛି ତା'ନୁହେଁ, ଏ' ସମ୍ବନ୍ଧରେ ଅନୁବାଦଗତ କୁଶଳତା ମଧ୍ୟ ପ୍ରଭୂତ ସାକ୍ଷ୍ୟ ପ୍ରଦାନ କରୁଛି । କବି ଜଗନ୍ନାଥ ଦାସ ଅନୁବାଦ କ୍ଷେତ୍ରରେ ଯେପରି ଦକ୍ଷତା ଦେଖାଇଛି ସେଭଳି ଦକ୍ଷତା ଦ୍ୱାଦଶ ସ୍କନ୍ଦର ଅନୁବାଦରେ ଦେଖାଯାଏ ନାହିଁ ।

"ଜନ୍ମାଦ୍ୟସ୍ୟ ଯତୋଽନ୍ୱୟାଦିତରତଶ୍ଚାର୍ଥେଷ୍ୱଭିଜ୍ଞଃ ସ୍ୱରାଟ୍ ।<br>
ତେନେବ୍ରହ୍ମହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୂରୟଃ ।।<br>
ତେଜୋବାରିମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋ ମୃଷା<br>
ଧମ୍ନା ସ୍ୱେନ ସଦା ନିରସ୍ତକୁହକଂ ସତ୍ୟଂ ପରଂ ଧୀମହି" ।।

ଜଗନ୍ନାଥଙ୍କ ଅନୁବାଦ— × × × × । ଅନାଦି ପରମ କାରଣ ।।

ଯାହାର ଆଦି ମଧ୍ୟ ଅନ୍ତେ । ବିଗ୍ରହ ନ ଘଟେ ଜଗତେ ।।<br>
ଇନ୍ଦ୍ରିୟ ଅର୍ଥ ନ ଜାଣନ୍ତି । ସତ୍ୟ ଯେ ନିତ୍ୟ ପ୍ରକାଶନ୍ତି ।।<br>
ଆନନ୍ଦ ମନେ ବେଦସାର । ବ୍ରହ୍ମାରେ ଯେ ପାଏ ନିସ୍ତାର ।।<br>
ଯାର ସ୍ୱରୂପ ହୃଦେ ଚିନ୍ତି । ବେଦ ପୁରୁଷ ନ ଜାଣନ୍ତି ।।<br>
ମୃତ୍ତିକା ବିକାର ଯେମନ୍ତ । ଜଳ ଅନଳେ ସୁଯନ୍ତ୍ରିତ ।।<br>
ରୂପ ଅରୂପ ସ୍ଥିତି ତିନି । ଯାହା ଯୋଗରେ ଅନୁମାନି ।।

ସ୍ୱଭାବେ ନୋହେ ନେ ଏମନ୍ତ । ଏ ସାଂଖ୍ୟ ଯୋଗୀଙ୍କର ମତ ॥
ଆତ୍ମା ପ୍ରକାଶେ ଜନ୍ମ ହୋଇ । ନିରତେ କୁହୁକ ବୋଲଇ ॥
ସତ୍ୟ ପରମାନନ୍ଦ ହରି । ଯାହା ଭାବିଲେ ଭବୁଁ ତରି ॥
ତାର ଚରଣେ ନିତ୍ୟ ଧ୍ୟାନ । କରି ତରନ୍ତି ସୁଜ୍ଞଜନ ॥

(ଭାଗବତ । ପ୍ରଥମ ସ୍କନ୍ଦ । ୧ମ ଅଧ୍ୟାୟ)

ଉପର୍ଯ୍ୟୁକ୍ତ ଅନୁବାଦରୁ ସ୍ପଷ୍ଟ ଧାରଣା ହୁଏ ଯେ, କବି ଜଗନ୍ନାଥ ମୂଳ ସଂସ୍କୃତ ଦାର୍ଶନିକ ପଦାବଳୀକୁ ନିଜେ ସୁସ୍ପଷ୍ଟରୂପେ ହୃଦୟଙ୍ଗମ କରି, ଓଡ଼ିଶାର ସାଧାରଣ ଜନତାର ଅର୍ଥବୋଧ ହେଲାପରି ଶବ୍ଦାବଳୀର ଯୋଜନାଦ୍ୱାରା ଓଡ଼ିଆ ବାକ୍ୟ ରଚନାର ଛାଞ୍ଚରେ ପକାଇ ଅନୁବାଦ କରିଛନ୍ତି । ଯେ ମୋଟ ଉପରେ ସଂସ୍କୃତ ବାକ୍ୟ ରଚନାର କେବଳ ଭାବଧାରାର ଅବଲମ୍ବନ କରିଛନ୍ତି ମାତ୍ର । କବି ଜଗନ୍ନାଥ ଦାସ ଭାବାନୁବାଦର ଏହି ପରିପାଟୀ କେବଳ ମୂଳ ଶ୍ଳୋକରେ ଅବଲମ୍ବନ କରିଛନ୍ତି ତାହା ନୁହେଁ, ସେ ପ୍ରଥମ ସ୍କନ୍ଦରୁ ଏକାଦଶ ସ୍କନ୍ଦ ସୁଦ୍ଧା ସେହି ନୀତି ଅନୁସରଣ କରିଛନ୍ତି ।

କେବଳ ସେତିକି ନୁହେଁ, କବି ଜଗନ୍ନାଥ ଦାସ ମୂଳ ସଂସ୍କୃତ ଭାଗବତର ୩୨୨ (ତିନିଶହ ବାଇଶ) ଅଧ୍ୟାୟକୁ (ଏକାଦଶ ସ୍କନ୍ଦ ସୁଦ୍ଧା) ତିନିଶହ ଅଠେଇଶି ଅଧ୍ୟାୟରେ ଅନୁବାଦ କରିଛନ୍ତି । ସ୍ଥଳବିଶେଷରେ ସେ ଦୁଇ ଅଧ୍ୟାୟକୁ ଗୋଟିଏ ଅଧ୍ୟାୟରେ ଅନୁବାଦ କରିବା ସଙ୍ଗେ ସଙ୍ଗେ ଅନ୍ୟ କେତେକ ସ୍ଥଳରେ ବିଷୟଗତ ସ୍ପଷ୍ଟୀକରଣ ନିମିତ୍ତ ଅଧ୍ୟାୟ ସଂଖ୍ୟା ବୃଦ୍ଧି କରିଛନ୍ତି । ଏ ପ୍ରକାର ବ୍ୟତିକ୍ରମ କେବଳ ଅଷ୍ଟମ, ଦଶମ ଓ ଏକାଦଶ ସ୍କନ୍ଦରେ ପରିଲକ୍ଷିତ ହୁଏ ।

ଏହିସବୁ ପ୍ରମାଣ ବଳରେ ବିଚାର କଲେ ଜଣାଯାଏ ଯେ, କବି ଜଗନ୍ନାଥ ଦାସ ନିଜ ପ୍ରତିଭାର ସ୍ୱାତନ୍ତ୍ର୍ୟ ଦେଖାଇ ଭାଗବତ ଗ୍ରନ୍ଥର ପ୍ରଥମ ସ୍କନ୍ଦରୁ ଏକାଦଶ ସ୍କନ୍ଦ ପର୍ଯ୍ୟନ୍ତ ଅନୁବାଦ ଶେଷକରି ବୈକୁଣ୍ଠ ଭୁବନକୁ ଶ୍ରୀକୃଷ୍ଣଙ୍କ ଅନୁଗମନ କରିଥିଲେ । ତାଙ୍କ ଅନ୍ତେ ଭାଗବତ ଗ୍ରନ୍ଥର ଅପୂର୍ଣ୍ଣତା ସମ୍ବନ୍ଧରେ ଚିନ୍ତାକରି ମହାଦେବ ଦାସ କେବଳ ଦ୍ୱାଦଶ ସ୍କନ୍ଦର ଅନୁବାଦ କରିଥିଲେ ।

ମୂଳ ସଂସ୍କୃତ ଭାଗବତ ବାର ଖଣ୍ଡରେ ସମାପ୍ତ ହୋଇଥିଲେ ହେଁ, ଓଡ଼ିଆରେ ତ୍ରୟୋଦଶ ସ୍କନ୍ଦ ଓ ଗୁପ୍ତ ଭାଗବତ ଶୀର୍ଷକ ଆଉ ଦୁଇଗୋଟି ଭାଗ ଦେଖିବାକୁ ମିଳେ । ତ୍ରୟୋଦଶ ସ୍କନ୍ଦରେ ମୋଟ ତେରଟି ଅଧ୍ୟାୟ ରହିଛି । ଉକ୍ତ ଅଧ୍ୟାୟ ଗୁଡ଼ିକ ମଧ୍ୟରେ ଷଷ୍ଠ ଓ ଦ୍ୱାଦଶ ଅଧ୍ୟାୟ ବ୍ୟତୀତ ଅନ୍ୟ ଏଗାରଟି ଅଧ୍ୟାୟର ଭଣିତରେ କବିଙ୍କ ନାମ "ଦ୍ୱାରକା ଜଗନ୍ନାଥ ଦାସ" ବୋଲି ରହିଛି ।

"ଦ୍ୱାରକା ଜଗନ୍ନାଥ ଦାସ । ଆନନ୍ଦେ କଲେ ପରକାଶ ॥
X X X X
ବ୍ରହ୍ମାଣ୍ଡ ମଧ୍ୟେ ମହାରସ । ଦ୍ୱାରକା ଜଗନ୍ନାଥ ଦାସ ॥
X X X X
ଦ୍ୱାରକା ଜଗନ୍ନାଥ ଦାସ । ଯେସନ୍ତ କହିଲେ କୃଷ୍ଣରସ" ॥

ଜଗନ୍ନାଥ ଦାସ ଭାଗବତର ପ୍ରଥମ ସ୍କନ୍ଦଠାରୁ ଏକାଦଶ ସ୍କନ୍ଦ ପର୍ଯ୍ୟନ୍ତ ପ୍ରତ୍ୟେକ ଅଧ୍ୟାୟର ଶେଷରେ "କହିଲା," 'କହଇ', 'ବ୍ରାହ୍ମଣ', 'ପାମର' ଆଦି

ପଦ ପରେ ଜଗନ୍ନାଥ ଦାସ ବୋଲି ଭଣିତା କରିଛନ୍ତି । କୁତ୍ରାପି ସେ ନିଜକୁ "ଦ୍ୱାରକା ଜଗନ୍ନାଥ" ବୋଲି ଚିହ୍ନାଉ ନାହାନ୍ତି । ତେଣୁ ଓଡ଼ିଆ ଭାଗବତ ତ୍ରୟୋଦଶ ସ୍କନ୍ଧର ପ୍ରଣେତା ବୋଧହୁଏ 'ଦ୍ୱାରକା' ନାମଧାରୀ ଅନ୍ୟତମ କବି ସେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଭକ୍ତ କିମ୍ବା ଭକ୍ତକବି ଜଗନ୍ନାଥ ଦାସଙ୍କ ଶିଷ୍ୟ ପରମ୍ପରାରେ ଜନୈକ ବ୍ୟକ୍ତି ଥିଲେ । ତେଣୁ ସେ ନିଜ ନାମ ସହିତ 'ଜଗନ୍ନାଥ' ପଦ ଯୋଗକରି ସ୍ୱଭକ୍ତିର ପରାକାଷ୍ଠା ଦେଖାଇଛନ୍ତି ।

ଅଧିକନ୍ତୁ ମଧ୍ୟ କବି ଜଗନ୍ନାଥ ଦାସ ଭାଗବତର ଏକାଦଶ ସ୍କନ୍ଧରେ 'ଭକ୍ତିଯୋଗ', 'ଜ୍ଞାନଯୋଗ,' ବିଭୂତି ଯୋଗ, ସାଂଖ୍ୟ ଯୋଗ, ନୃସିଂହତତ୍ତ୍ୱ ଓ ଈଶ୍ୱର ରହସ୍ୟ ପ୍ରଭୃତି ଦାର୍ଶନିକ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବା ପରେ ; ପୁଣି ତ୍ରୟୋଦଶ ସ୍କନ୍ଧରେ ଭକ୍ତିଲକ୍ଷଣ (୪ର୍ଥ ଅଧ୍ୟାୟ), ଜ୍ଞାନ ଲକ୍ଷଣ (ପଞ୍ଚମ ଅଧ୍ୟାୟ), କାମ୍ୟାର୍ଜନ (ନବମ ଅଧ୍ୟାୟ), ବିଭୂତି ଯୋଗ (ଦଶମ ଅଧ୍ୟାୟ) ଆଦିର ବର୍ଣ୍ଣନା କରିଥା'ନ୍ତେ କାହିଁକି ?

ଏତଦ୍‌ବ୍ୟତୀତ ଏକାଦଶ ସ୍କନ୍ଧର ତ୍ରିଂଶ ଅଧ୍ୟାୟରେ ଶ୍ରୀକୃଷ୍ଣଙ୍କଠାରୁ ବିଦାୟ ନେଇ—

"ରତ୍ନପାଦୁକା ମୁଣ୍ଡେ କରି । ଉଦ୍ଧବ ଦଣ୍ଡେ ତାହା ଧରି ।"

ଉତ୍ତରପଥରେ ତପସ୍ୟାରତ ଥିବାର ବର୍ଣ୍ଣନା ଥିବାବେଳେ, ପୁଣି ତ୍ରୟୋଦଶ ସ୍କନ୍ଧରେ "ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ" ଓ ଶ୍ରୀକୃଷ୍ଣଙ୍କ ସହିତ ଉଦ୍ଧବଙ୍କ ସ୍ୱର୍ଗଗମନ ବୃତ୍ତାନ୍ତ ନିତାନ୍ତ ଅପ୍ରାସଙ୍ଗିକ ନୁହେଁ କି ?

'ଗୁପ୍ତ ଭାଗବତ' ବା 'ତ୍ରେଇଚବିଶ' ଶୀର୍ଷକ ଅନ୍ୟ ଯେଉଁ ପୁସ୍ତକଟି ମିଳେ, ତା'ର ଭଣିତାରେ ଜଗନ୍ନାଥ ଦାସଙ୍କ ନାମ ମିଳୁଥିଲେ ହେଁ ତାହା ଏକ ପରବର୍ତ୍ତୀ କାଳୀନ ପୁସ୍ତକ ବୋଲି ଜଣାଯାଏ । କାରଣ ଓଡ଼ିଶାରେ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ 'ରାଧାଷ୍ଟମୀ' ବ୍ରତ ପ୍ରଚଳିତ ହୋଇ ନଥିଲା । ଶ୍ରୀମଦ୍ ଭାଗବତ ଓ ଓଡ଼ିଆ ଅନୁବାଦରେ ମଧ୍ୟ 'ରାଧା'ଙ୍କ ନାମୋଲ୍ଲେଖ ହୁଏ। କରାଯାଇ ନାହିଁ । ବିଶେଷତଃ କବି ଜଗନ୍ନାଥ ଦାସଙ୍କ ସମସାମୟିକ ଶ୍ରୀ ଚୈତନ୍ୟଙ୍କ ଅନୁଯାୟୀ ଗୋପାଳ ଭଟ୍ଟଙ୍କ "ହରିଭକ୍ତି ବିଳାସ"ରେ ମଧ୍ୟ 'ରାଧାଷ୍ଟମୀ' ବ୍ରତ ସମ୍ବନ୍ଧରେ କୌଣସି ବିଧି ବିଧାନ ନାହିଁ । ଆଜିକାଲି ଯେଉଁ ଭାଦ୍ର ଶୁକ୍ଳ ଅଷ୍ଟମୀରେ "ରାଧାଷ୍ଟମୀ" ବ୍ରତ ପାଳିତ ହେଉଛି, ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଉକ୍ତ ତିଥିରେ "ଦୂର୍ବାଷ୍ଟମୀ" ନାମକ ଶିବବ୍ରତ ପାଳିତ ହେଉଥିବାର, ଓଡ଼ିଶାରେ ରଚିତ ବିଶିଷ୍ଟ ଧର୍ମଶାସ୍ତ୍ର "କୃତ୍ୟ କୌମୁଦୀ", ସ୍ମୃତିସାର ସଂଗ୍ରହ, କାଳଦୀପ ତଥା କାଳସାର ପ୍ରଭୃତି ଗ୍ରନ୍ଥରୁ ପ୍ରମାଣ ମିଳେ । ଖ୍ରୀଷ୍ଟୀୟ ଅଷ୍ଟଦଶ ଶତାବ୍ଦୀର ମଧ୍ୟଭାଗର ସ୍ମୃତିକାର କବିକୋବିଦ ମହାମହୋପାଧ୍ୟାୟ କୃଷ୍ଣ ମିଶ୍ରଙ୍କ ରଚିତ 'କାଳ ସର୍ବସ୍ୱ' ଶୀର୍ଷକ ଗ୍ରନ୍ଥରୁ ଜଣାଯାଏ—

"ଯଦ୍ୟପି ରାଧା ଲଳିତା ଜନ୍ମ ହରିଭକ୍ତି ବିଳାସେ ନାସ୍ତି ତଥାପି ବୈଷ୍ଣବାଖ୍ୟବ୍ରତ ସାଧନ ଦୀପିକାୟାଂ ସଦାଚ ତତ୍ କିଞ୍ଚିଲ୍ଲିଖ୍ୟତେ । ଜ୍ୟେଷ୍ଠାଷ୍ଟମୀ × ଜ୍ୟେଷ୍ଠା ଇତି ରାଧାୟା ନାମାନ୍ତର ମିତି କେଚିତ୍ ।।"

ପ୍ରସିଦ୍ଧ ଗବେଷକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଓଡ଼ିଶାରେ 'ରାଧାଷ୍ଟମୀ ବ୍ରତର ପ୍ରଚଳନ ସମ୍ବନ୍ଧରେ ଆଲୋଚନା କରି ତାଙ୍କ Descriptive catalogue of Sanskrit Mns. Vol. I ର ମୁଖବନ୍ଧରେ ଲେଖିଛନ୍ତି—

Krishna Mishra, who was a Smartta had to incorporate the festivals connected with Radha in his work on Dharma Sastra as by his time (Mid 18th century). Radha, who was not mentioned in the previous Smrti works had become deified and the devotees of Radha Krishna had formed an influencial section in Orissa due to the preaching of Rasikananda Gosvami, Baladeva Vidyabhusana and others. Thus, Kalasarvasva throws new light on the development of Radha Kirshna worship in Orissa, which was steadily gaining ground in his days and became dominant in society during the last two centuries."

(Descriptive catalogue of Sanskrit Mns. Vol. I Page—XXXVII)

ଉକ୍ତ ଉକ୍ତିରୁ ବେଶ୍ ଜଣାଯାଏ ଯେ, ସ୍ମୃତିକାର କୃଷ୍ଣ ମିଶ୍ରଙ୍କ ସମୟ ବେଳକୁ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଓଡ଼ିଶାରେ ରାଧାପୂଜା ବା ରାଧାଷ୍ଟମୀ ବ୍ରତ ସମାଜରେ ପ୍ରଚଳିତ ହୋଇ ନଥିଲା କିମ୍ବା ସ୍ମୃତିକାର ହୁଅନ୍ତୁ ବା ପୁରାଣକାର ହୁଅନ୍ତୁ, ରାଧାଜନ୍ମର ମାହାତ୍ମ୍ୟ ସମ୍ବନ୍ଧରେ ଲେଖିବାକୁ ସାହସ କରି ନଥିଲେ । ଏତେ ବଡ଼ ଐତିହାସିକ ସତ୍ୟକୁ ଏଡ଼ାଇ ଜଗନ୍ନାଥ ଦାସ 'ଗୁପ୍ତ ଭାଗବତ'ରେ ରାଧାଜନ୍ମ ମହାତ୍ମ୍ୟ ଉଲ୍ଲେଖ କରିବା ସନ୍ଦେହାତ୍ମକ ବିଷୟ ନୁହେଁ କି ? ଆହୁରି ମଧ୍ୟ ଭାଗବତ ଦଶମ ସ୍କନ୍ଦର ଗୋପଲୀଳା ପ୍ରକରଣର ୪୮ ଅଧ୍ୟାୟ ମଧ୍ୟରେ ରାଧାଜନ୍ମ ଲୀଳା ବର୍ଣ୍ଣନା ନ କରି, କବି ଜଗନ୍ନାଥ ଦାସ ଗୁପ୍ତ ଭାଗବତରେ ତାହା ଲେଖିଥା'ନ୍ତେ କାହିଁକି ?

ଖୁବ୍ ସମ୍ଭବତଃ, ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଗୋସ୍ୱାମୀମାନଙ୍କ ପ୍ରଚାର ଦ୍ୱାରା ପ୍ରଭାବିତ ହୋଇ କୌଣସି ଲେଖକ 'ଗୁପ୍ତଭାଗବତ' ପ୍ରଣୟନ କରି ଖ୍ୟାତିପ୍ରାପ୍ତ କବି ଜଗନ୍ନାଥ ଦାସଙ୍କ ନାମରେ ଭଣିତା କରିଛନ୍ତି ।

ଓଡ଼ିଆ ଭାଗବତର ରଚନା ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯିବା ପରେ, ଭାଗବତର ଶୁଦ୍ଧପାଠ ସମ୍ବନ୍ଧରେ ବିଚାରର ପ୍ରଶ୍ନ ଉଠେ । ଆଲୋଚନା ଫଳରେ ଜଣାଯାଏ ଯେ, ଆଜି ନୁହେଁ, ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରୁ ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତର ଶୁଦ୍ଧ ପାଠ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଉତ୍ତର ଓଡ଼ିଶାର ଭୋଗରାଇ ନିବାସୀ କବି ଜାନକୀବଲ୍ଲଭ କର ଶର୍ମା, ମେଦିନୀପୁର ଜିଲ୍ଲା ପଟାସପୁର ପ୍ରଗଣାର ଜମିଦାର (ରଜା) ଚୌଧୁରୀ ଗୋପେନ୍ଦ୍ର

ନନ୍ଦନ ଦାଶମହାପାତ୍ର ମହାଶୟଙ୍କ ପୃଷ୍ଠପୋଷକତାରେ ରହି, ତାଙ୍କ ରାଣୀ ଗୁଣ୍ଡିଚା ଦେବୀଙ୍କ ନିର୍ଦ୍ଦେଶ ମତେ ଶକାବ୍ଦ ୧୬୭୪ ବା ଖ୍ରୀଷ୍ଟାବ୍ଦ ୧୭୫୨ରେ ଜଗନ୍ନାଥ ଦାସଙ୍କ ଭାଗବତର ସଂଶୋଧନ କରିଥିଲେ । ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତର ନବମ ସ୍କନ୍ଧର ପୁଷ୍ପିକାରୁ ଜଣାଯାଏ —

"ଏବେ ହୋ ଶୁଣ ସାଧୁଜନ । କହୁଛି ତୁମ୍ଭର ଚରଣ ॥
ବ୍ୟାସଭାଷିତ ଜଗନ୍ନାଥ । ଭାଷାରେ ବର୍ଣ୍ଣିଲେ ସମସ୍ତ ॥
ସେ ଭାଷା ଲେଖକ ଦୋଷରେ । ଅନ୍ୟଥା ହେଲା ଏ ସଂସାରେ ॥
ସେ ବ୍ୟାସ ଜଗନ୍ନାଥ ବାଣୀ । ଯେ ରୂପେ ତୁଲ୍ୟ ପରିମାଣି ॥
ଯେ ରୂପେ ବିଚାର କରିଣ । ଜାନକୀ ବଲ୍ଲଭ ବ୍ରାହ୍ମଣ ॥
ଗୁଣ୍ଡିଚା ବାକ୍ୟ ଅନୁସରି । ଶୋଧି ଲେଖିଲେ ଯତ୍ନକରି ॥
ପଣ୍ଡିତେ ନ ଧରିବ ଦୋଷ । ସର୍ବାନ୍ତର୍ଯ୍ୟାମୀ ହୃଷୀକେଶ" ॥

(ଜାନକୀବଲ୍ଲଭଙ୍କ ଭାଗବତ । ନବମ ସ୍କନ୍ଧ । ପୁଷ୍ପିକା)

ସେ ସ୍ୱ ସଂଶୋଧିତ ଭାଗବତର ରଚନା ସମୟ ଉଲ୍ଲେଖ କରି ପଞ୍ଚମ ସ୍କନ୍ଧରେ ଲେଖିଛନ୍ତି —

"ଶକାବ୍ଦ ଚାରି ସାତ ନେଇ । ତା'ବାମେ ଷୋଳ ସଂଖ୍ୟା ଦେଇ ॥
ଏତେ ଶକାବ୍ଦେ ବିଷ୍ଣୁ ଧ୍ୟାୟୀ । ଗୁଣ୍ଡିଚା ବାକ୍ୟେ ବଦ୍ଧ ହୋଇ ॥
ଲେଖିଲେ ଭାଗବତ କଥା । ଶୁଣନ୍ତେ ତୁଟେ ଭବ ବ୍ୟଥା" ॥

(ଭାଗବତ ୫ମ ସ୍କନ୍ଧ । ପୁଷ୍ପିକା)

କବି ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତର ୫ମ ସ୍କନ୍ଧ ଶକାବ୍ଦ ୧୬୭୪ ବା ଖ୍ରୀ. ଅ: ୧୭୫୨ରେ ଏବଂ ଏକାଦଶ ସ୍କନ୍ଧ ମଧ୍ୟ ୧୭୫୩ରେ ଶେଷ ହୋଇ ଥିଲା । ତେଣୁ ଅନୁମାନ କରାଯାଇପାରେ ଯେ, କବି ଖୁବ୍ ସମ୍ଭବତଃ ଖ୍ରୀ. ଅ. ୧୭୫୧ରେ ଭାଗବତର ସଂଶୋଧନ କାର୍ଯ୍ୟ ଆରମ୍ଭ କରି ଖ୍ରୀ. ଅ. ୧୭୫୪ ମଧ୍ୟରେ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଶେଷ କରିଥିବେ ଏବଂ ବୋଧହୁଏ ; ଏହା ହେଉଛି, ଜଗନ୍ନାଥ ଦାସଙ୍କ 'ଭାଗବତ'ର ପ୍ରଥମ ପାଣ୍ଡିତ୍ୟପୂର୍ଣ୍ଣ ସମ୍ପାଦନା । ଆଲୋଚକମାନଙ୍କ ଜିଜ୍ଞାସାର ପୂରଣ ଲାଗି ଏଠାରେ ଭାଗବତ ଅଷ୍ଟମ ସ୍କନ୍ଧର ଷଷ୍ଠ ଅଧ୍ୟାୟରେ ବର୍ଣ୍ଣିତ ବିଷ୍ଣୁଙ୍କ ମୋହିନୀରୂପ ବର୍ଣ୍ଣନା ପ୍ରସଙ୍ଗରୁ କେତେକାଂଶ ପ୍ରଦତ୍ତ ହେଲା —

"ଏମନ୍ତେ ଦେବ ସ୍ତୁତି ଶୁଣି । ଶୂନ୍ୟେ ପ୍ରକାଶ ଚକ୍ରପାଣି ॥
ସମସ୍ତେ ହରି ତେଜ ଦେଖି । ଦେବେ ବୁଜିଲେ ଭୟେ ଆଖି ॥

ଦିଗ ନ ପାରନ୍ତି ବିଚାରି । ବୁଦ୍ଧର ମତେ ପ୍ରାଣ ଧରି ॥
ରହିଲେ ଅନ୍ଧକାରଛନ୍ନେ । ରହି ନ ପାରନ୍ତି ଗଗନେ ॥

ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ । ଚେକି ଅନ୍ତରୀକ୍ଷେ ରହିଲେ ॥
ଦେଖିଲେ ବିଷ୍ଣୁର ପ୍ରକାଶ । ଶରୀର ପୂରିଛି ଆକାଶ ॥

| | |
|---|---|
| ନୀଳ ମହୀନ୍ଦ୍ର ପ୍ରାୟେ ଦିଶେ | । ଅରୁଣ ଲୋଚନ ପ୍ରକାଶେ ।। |
| ବିକଚ ପୁଣ୍ଡରୀକ ପ୍ରାୟେ | । କର୍ଣ୍ଣେ କୁଣ୍ଡଳ ବେନି ଶୋହେ ।। |
| ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ | । ପୀତବସନ ପରିଧାନ ।। |
| ପ୍ରସନ୍ନ ରୂପ ସର୍ବ ଅଙ୍ଗ | । ସୁମୁଖ ସୁନ୍ଦର ସୁରଙ୍ଗ" ।। |

(ଜଗନ୍ନାଥ ଦାସଙ୍କ ଭାଗବତ)

| | |
|---|---|
| "ଏମନ୍ତେ ଦେବ ସ୍ତୁତି ଶୁଣି | । ଶୂନ୍ୟେ ପ୍ରକାଶ ଚକ୍ରପାଣି ।। |
| ସହସ୍ର ସୂର୍ଯ୍ୟ ତେଜ ଦେଖି | । ଦେବେ ବୁଜିଲେ ଭୟେ ଆଖି ।। |
| ଦିଶ ଆକାଶ ନ ଜାଣିଲେ | । ପ୍ରଭୁଙ୍କୁ ଚିହ୍ନି ନ ପାରିଲେ ।। |
| ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ | । ଉର୍ଦ୍ଧ୍ୱେ ଅନ୍ତରୀକ୍ଷେ ରହିଲେ ।। |
| ଦେଖିଲେ ବିଷ୍ଣୁ କଳେବର | । କି ଶୋଭା ଦେବା ପଟାନ୍ତର ।। |
| ନିର୍ମଳ ମରକତ ବର୍ଣ୍ଣ | । ପଦ୍ମ ଅରୁଣ ବିଲୋଚନ ।। |
| ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ | । ପୀତ ବସନ ପରିଧାନ ।। |
| ପ୍ରସନ୍ନ ରମ୍ୟ କଳେବର | । ସୁମୁଖ ସୁଭ୍ରୁବ ସୁନ୍ଦର ।। |
| ମସ୍ତକେ ଅମୂଲ୍ୟ ମୁକୁଟ | । କାଞ୍ଚନ କେୟୂର ପ୍ରକଟ ।। |
| କର୍ଣ୍ଣେ କୁଣ୍ଡଳ ବେନି ଶୋହେ | । ଯେବେ ଅଶେଷ ଜନ ମୋହେ" ।। |

(ଜାନକୀବଲ୍ଲଭଙ୍କ ସଂଶୋଧିତ ଭାଗବତ)

ଆଲୋଚନାରୁ ଆହୁରି ମଧ୍ୟ ଜଣାଯାଏ ଯେ, "ଭାଗବତ'ର ଚତୁର୍ଥ ସ୍କନ୍ଧରେ ପୁସ୍ତକାକାରରେ ମିଳୁଥିବା ଜଗନ୍ନାଥ ଦାସଙ୍କ ଭାଗବତ ଓ ଜାନକୀବଲ୍ଲଭଙ୍କ ସମ୍ପାଦନା ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ବିଶେଷତଃ ଉକ୍ତ ସ୍କନ୍ଧର ୫.୫ମ ଅଧ୍ୟାୟରେ ବର୍ଣ୍ଣିତ 'ଧ୍ରୁବଚରିତ' ପ୍ରସଙ୍ଗରେ ଉଭୟ ପାଠର ଅନେକ ପାର୍ଥକ୍ୟ ଦେଖାଯାଏ ।

ମୁଦ୍ରିତ ଭାଗବତର ଧ୍ରୁବ ଚରିତ ପ୍ରସଙ୍ଗରେ ଆରମ୍ଭରୁ ଚଉଦ ଅକ୍ଷର ବିଶିଷ୍ଟ ପଦ ରଚନା କରଯାଇ, ପ୍ରଥମେ ବିଘ୍ନବିନାଶକ ଗଣେଶଙ୍କୁ ପ୍ରାର୍ଥନା କରଯାଇଛି ଏବଂ ଏହି ବନ୍ଦନା ପ୍ରସଙ୍ଗରେ ପନ୍ଦରଟି ପଦ ରଚନା କରିବା ପରେ କବି "ମୈତ୍ରେୟ ଉବାଚ" ଲେଖି ଧ୍ରୁବ ଚରିତ ଆରମ୍ଭ କରିଛନ୍ତି । ମାତ୍ର ସଂଶୋଧକ ଜାନକୀବଲ୍ଲଭଙ୍କ ସମ୍ପାଦିତ ଭାଗବତର ଚତୁର୍ଥ ସ୍କନ୍ଧ ଅଷ୍ଟମ ଅଧ୍ୟାୟର ଆରମ୍ଭରୁ ପ୍ରଥମେ ମୈତ୍ରେୟ ଉବାଚ ଲେଖାଯାଇ ନଅ ଅକ୍ଷର ବିଶିଷ୍ଟ ଷୋଳପଦ ପରେ ଚଉଦ ଅକ୍ଷର ବିଶିଷ୍ଟ ପଦାବଳୀ ଆରମ୍ଭ କରଯାଇଛି ।

ଏହି ସବୁ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, କବି ଜାନକୀବଲ୍ଲଭ ଜଗନ୍ନାଥ ଦାସଙ୍କ ଭାଗବତକୁ ସମ୍ପାଦନା କରିବାକୁ ଯାଇ କେତେକ ସ୍ଥାନରେ ପରିବର୍ତ୍ତନ କରିଛନ୍ତି । ତେଣୁ 'ଭାଗବତ'ର ଶୁଦ୍ଧ ସଂସ୍କରଣ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ଉଲ୍ଲେଖନୀୟ ଅବଦାନ ପ୍ରତ୍ୟେକ ଆଲୋଚକଙ୍କୁ ଉଦ୍‌ବୁଦ୍ଧ କରେ ଏବଂ ବର୍ତ୍ତମାନ ଯଦି ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ'ର ଶୁଦ୍ଧି ସଂସ୍କରଣ କରଯାଏ, ସେ କ୍ଷେତ୍ରରେ ଜାନକୀବଲ୍ଲଭଙ୍କ ପାଠ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଏକାନ୍ତ ଅପରିହାର୍ଯ୍ୟ ବୋଲି ମନେ ହୁଏ ।

ଭାଗବତର ଶୁଦ୍ଧ ସଂସ୍କରଣ କଲାବେଳେ ଓଡ଼ିଶାରେ ପ୍ରାପ୍ତ ଆଉ ଦୁଇଟି ଭାଗବତର ଅନୁବାଦ ସମ୍ବନ୍ଧରେ ମଧ୍ୟ ଆଲୋଚନା କରଯାଇପାରେ ।

ଓଡ଼ିଶାରେ 'ଖାଡଙ୍ଗା ଭାଗବତ' ନାମରେ ଖଣ୍ଡିଏ ଶ୍ରୀମଦ୍ ଭାଗବତର ଅନୁବାଦ ଦେଖିବାକୁ ମିଳେ । ଦୀନବନ୍ଧୁ ଖାଡ଼ଙ୍ଗା ପ୍ରଥମ ସ୍କନ୍ଧରୁ ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ସଂସ୍କୃତ ଭାଗବତକୁ ପ୍ରାଞ୍ଜଳ ଓଡ଼ିଆ ଭାଷାରେ ଅନୁବାଦ କରି ଉତ୍କଳର ଦକ୍ଷିଣାଞ୍ଚଳରେ ପ୍ରଚାର କରାଇଥିଲେ । ଆଲୋଚନାରୁ ଜଣାଯାଏ ଯେ, ଦୀନବନ୍ଧୁ ଖଡ୍ଗରାୟ ବା ଦୀନବନ୍ଧୁ ଖାଡଙ୍ଗା ଖଣ୍ଡପଡ଼ନ ବା ଖଣ୍ଡପଡା ରାଜ୍ୟର ରାଜା ନାରାୟଣ ମଙ୍ଗରାଜଙ୍କ ସଭାରେ ଜଣେ ପ୍ରସିଦ୍ଧ କବିରୂପେ ଆସନ ଗ୍ରହଣ କରିଥିଲେ । 'ହରିଭକ୍ତି ସୁଧାକର' ନାମକ ପୁସ୍ତକର ପୁଷ୍ପିକାରୁ ଜଣାଯାଏ ଯେ, ନାରାୟଣ ମଙ୍ଗରାଜ ଶକାବ୍ଦ ୧୬୧୦ ବା ଖ୍ରୀ: ଅ: ୧୬୮୮ରେ ବିଦ୍ୟମାନ ଥିଲେ । ତେଣୁ ଦୀନବନ୍ଧୁ ଖାଡ଼ଙ୍ଗା ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଭାଗବତର ଅନୁବାଦ କରି ଲୋକସମାଜରେ ପ୍ରଖ୍ୟାତ ହୋଇଥିଲେ । କବି ଦୀନବନ୍ଧୁ ଖାଡ଼ଙ୍ଗା ନିଜର ପରିଚୟ ତଥା ଅନୁବାଦ ସମ୍ବନ୍ଧରେ ଲେଖିଛନ୍ତି—

"ଶ୍ରୀ ପୁରୁଷୋତ୍ତମ ନିକଟ । ବ୍ରାହ୍ମଣ ଶାସନ ପ୍ରକଟ ॥
ତା ନାମ ବାମଦେବପୁର । କୌଶିକସମାନଙ୍କ ମନ୍ଦିର ॥
ସେ ବାମଦେବ ବାଜପେୟୀ । ସେ ଗ୍ରାମେ ଥିଲେ ଦାନ ପାଇ ॥
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ॥

ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗା ଦାସ ନାମ ହୋଇ ॥
ବାହୁକି ଦୀକ୍ଷିତ ନାମରେ । ଧନ୍ୟବ ତାହାଙ୍କ କୁମରେ ॥
ତାଙ୍କ ତନୁଜ ଜୀବ ଦାସ । ମିଶ୍ର ନାମରେ ସେ ପ୍ରକାଶ ॥
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ॥
ମୋହର ଦୀନବନ୍ଧୁ ନାମ । ଯେ ବୈତରଣୀ ତଟେ ଗ୍ରାମ ॥
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମେ ଅଟଇ ଯେ ସ୍ଥିତ ॥
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣ ଭକ୍ତିରେ ଲାଳସ ॥
ଶ୍ରୀ ନିତ୍ୟାନନ୍ଦ ପରିବାର । ଅଟନ୍ତି ଅତି ଶୁଦ୍ଧାଚାର ॥

ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତଙ୍କୁ ଗୀତ କଲି ॥
ଗୌଡ଼ ବାରଣସୀ ଉତ୍କଳ । ଏ ତିନି ଦେଶ ପୋଥି ଠୁଳ ॥
କରିଣ ଶୁଦ୍ଧ ଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥

(ଖାଡଙ୍ଗା ଭାଗବତ—ପ୍ରଥମ ଖଣ୍ଡ, ଶେଷ ଅଧ୍ୟାୟ)

କବି ଖାଡଙ୍ଗାଙ୍କ ବ୍ୟତୀତ ମଞ୍ଜୁଷାର ରାଜା ଜଗନ୍ନାଥ ରାଜମଣିଙ୍କ ଦ୍ୱାରା ଶ୍ରୀମଦ୍ ଭାଗବତର ପଦ୍ୟାନୁବାଦ ହୋଇଥିବାର ପ୍ରମାଣ ମିଳୁଛି । ଜଗନ୍ନାଥ ରାଜମଣି ଥିଲେ ରାଜକବି ଶ୍ରୀନିବାସ ରାଜମଣିଙ୍କ ପୁତ୍ର ଏବଂ ତାଙ୍କ ସମୟ ଖ୍ରୀ: ଅ: ୧୮୬୦—୧୮୯୦ ବୋଲି 'ମଞ୍ଜୁଷା ରାଜବଂଶ ଚରିତମ୍' ଶୀର୍ଷକ ସଂସ୍କୃତ ପୁସ୍ତକରୁ ପ୍ରମାଣ ମିଳେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ

ଅଧ୍ୟାପକ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟଙ୍କ ନିକଟରେ, ଜଗନ୍ନାଥ ରାଜମଣିଙ୍କ ଶ୍ରୀମଦ୍ ଭାଗବତ ଅଷ୍ଟମ ସ୍କନ୍ଧର ପଦ୍ୟାନୁବାଦ ରହିଛି । ଉକ୍ତ ପୋଥିର ପୁଷ୍ପିକାରୁ ଜଗନ୍ନାଥ ରାଜମଣିଙ୍କ ନାମ ଦେଖିବାକୁ ମିଳେ ।

"ଶ୍ରୀ ଜଗନ୍ନାଥ ରାଜମଣି । ଶ୍ରୀରାଜଦେବ ଗୀତେ ଭଣି ॥
ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ଅଷ୍ଟମ ସ୍କନ୍ଧେ ଶୁକ-ପରୀକ୍ଷ ସମ୍ବାଦେ ମନ୍ୱନ୍ତରାନୁବର୍ଣ୍ଣନେ ଗଜେନ୍ଦ୍ର ମୋକ୍ଷଣେ ନାମ ତୃତୀୟୋଽଧ୍ୟାୟଃ ।"

ଓଡ଼ିଆ ଭାଗବତର ଶୁଦ୍ଧ ସଂସ୍କରଣ ଲାଗି ଶ୍ରୀ ଜଗନ୍ନାଥ ରାଜମଣିଙ୍କ ଅନୁବାଦ ଗ୍ରନ୍ଥଟି ମଧ୍ୟ ଏକ ଉପାଦେୟ ପୁସ୍ତକରୂପେ ବିବେଚିତ ହେବ ।

ଏତଦ୍ ବ୍ୟତୀତ ଓଡ଼ିଶାର ବିଭିନ୍ନ ମୁଦ୍ରଣାଳୟ ଓ ପ୍ରକାଶକ ତଥା ସ୍ୱର୍ଗତଃ ଚିନ୍ତାମଣି ଆଚାର୍ଯ୍ୟ ପ୍ରଭୃତି ବିଦ୍ୱାନ୍‌ମାନଙ୍କ ଦ୍ୱାରା ସମ୍ପାଦିତ 'ଓଡ଼ିଆ ଭାଗବତ'ର ଭିନ୍ନ ଭିନ୍ନ ସଂସ୍କରଣ ପ୍ରକାଶ ପାଇଛି । ତେଣୁ 'ଓଡ଼ିଆ ଭାଗବତ'ର ଗୋଟିଏ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବାକୁ ହେଲେ, ଉଭୟ ପ୍ରାଚୀନ ଓ ଅର୍ବାଚୀନ ଭାଗବତ ପୁସ୍ତକ ଗୁଡ଼ିକର ପାଠ ସଂଗ୍ରହ କରଯିବା ଏକାନ୍ତ ଆବଶ୍ୟକ । ତାହା ଫଳରେ ସମ୍ପାଦିତ ଶୁଦ୍ଧ ସଂସ୍କରଣରେ ଭିନ୍ନ ଭିନ୍ନ ପାଠର ଉଦାହରଣମାନ ପାଦଟୀକାରେ ସ୍ଥାନ ପାଇପାରିବ ଏବଂ ସେହିପରି ଭାବରେ ସମ୍ପାଦିତ ଏକ ପୁସ୍ତକ ପ୍ରକାଶ ପାଇଲେ, ତାହା ପ୍ରାମାଣିକ ସଂସ୍କରଣରୂପେ ବିଦ୍ୱତ୍ ସମାଜରେ ଆଦୃତ ହେବ, ସନ୍ଦେହ ନାହିଁ ।

---

# ଏକାଦଶ ସ୍କନ୍ଧ

## ଜଗନ୍ନାଥ ଦାସ କୃତ ଓଡ଼ିଆ ଭାଗବତ

ଡକ୍ଟର ବେଣୀମାଧବ ପାଢ଼ୀ

ଉତ୍କଳର ଇତିହାସରେ ଯେତେ ଭକ୍ତକବି ନିଜ ନିଜର ସାହିତ୍ୟକୃତି ଦ୍ୱାରା ଓଡ଼ିଆ ଭାଷାକୁ ବୃଦ୍ଧିମନ୍ତ କରି ଯାଇଛନ୍ତି ସେମାନଙ୍କ ମଧ୍ୟରେ ଭାଗବତ-କାର ଅତିବଡ଼ୀ ଜଗନ୍ନାଥ ଦାସ ହେଉଛନ୍ତି ଅଗ୍ରଗଣ୍ୟ । ଏ ମହାପୁରୁଷଙ୍କ ପୂର୍ଣ୍ଣ ଜୀବନୀ ସମ୍ବନ୍ଧରେ କୌଣସି ପ୍ରାମାଣିକ ତଥ୍ୟ ଅଦ୍ୟାପି ହସ୍ତଗତ ହୋଇନାହିଁ । ତାଙ୍କ ପ୍ରଣୀତ ଗ୍ରନ୍ଥମାନଙ୍କରୁ ମଧ୍ୟ ତାଙ୍କ ସମ୍ବନ୍ଧରେ ବିଶେଷ କିଛି ଉପାଦାନ ମିଳେ ନାହିଁ । ପୁଣି ମଧ୍ୟ ବୈଷ୍ଣବକବି ଦିବାକର ଦାସଙ୍କ 'ଜଗନ୍ନାଥ ଚରିତା-ମୃତ'ରୁ ଯାହା କିଛି ସଙ୍କେତ ମିଳେ ତା ଉପରେ ସଂପୂର୍ଣ୍ଣ ବିଶ୍ୱାସ କରିହୁଏ ନାହିଁ । ଯଦିଚ ତାହା ଅତିବଡ଼ ସଂପ୍ରଦାୟର ଏକ ପ୍ରଧାନ ଗ୍ରନ୍ଥ । ସେ ଯାହା ହେଉ ଜଗନ୍ନାଥ ଦାସଙ୍କ ଦ୍ୱାରା ଓଡ଼ିଆ ଭାଷାରେ ବହୁଗ୍ରନ୍ଥ ରଚିତ ହୋଇ ଥିବାରେ କୌଣସି ସନ୍ଦେହ ନାହିଁ । ସେ ମଧ୍ୟରୁ ଓଡ଼ିଆ ନବାକ୍ଷରୀ ଭାଗବତ, ଅର୍ଥ କୋଇଲି, ଦାରୁବ୍ରହ୍ମଗୀତା, ତୁଳାଭିଣା, ମୃଗୁଣୀସ୍ତୁତି, ମନଶିକ୍ଷା ପ୍ରଭୃତି କେତୋଟିକି ଛାଡ଼ିଦେଲେ ଅନ୍ୟଗୁଡ଼ିକ ପ୍ରାୟ ଲୁପ୍ତପ୍ରାୟ କହିଲେ ଚଳେ । ତଥାପି ତାଙ୍କ ରଚିତ ଗ୍ରନ୍ଥଗୁଡ଼ିକ, ଛୋଟ ହେଉ ବା ବଡ଼ ହେଉ ଓଡ଼ିଆ ସାହିତ୍ୟରେ ଏତେ ଲୋକପ୍ରିୟ ହୋଇ ପାରିଛି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେ ମଧ୍ୟରୁ ଓଡ଼ିଆ ଭାଗବତ ଓଡ଼ିଶାର ଘରେ ଘରେ ପରିଚିତ । ଏହା ଭାଗବତ ଗୋସାଇଁ ନାମରେ ସର୍ବତ୍ର ପୂଜିତ ଓ ପଠିତ ହୋଇ ଆସୁଛି ।

ଅତିବଡ଼ଙ୍କ ସମ୍ବନ୍ଧରେ ଯେଉଁ କେତେକ କିମ୍ବଦନ୍ତୀ ମିଳେ ସେଥିରୁ ସେ ପୁରୀରାଜା ପ୍ରତାପରୁଦ୍ର ଦେବଙ୍କ ରାଜୁତି କାଳରେ କପିଳେଶ୍ୱରପୁର ଶାସନ ନିବାସୀ ପୁରାଣପଣ୍ଡା ଭଗବାନ ଦାସଙ୍କ ଔରସରେ ଓ ପଦ୍ମାବତୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିବା ଜଣାପଡ଼େ । ଏହାଙ୍କ ଜନ୍ମ ୧୪୮୭ ଖ୍ରୀଷ୍ଟାବ୍ଦ । ଏ ମହାତ୍ମା ଶୈଶବ କାଳରୁହିଁ ଅତି ପ୍ରତିଭାଶାଳୀ ଥିଲେ ଏବଂ ଅଠର ବର୍ଷ ବୟସରେ ଜଗନ୍ନାଥ ମନ୍ଦିର ବଟ ଗଣେଶଙ୍କ ପାଖରେ ସଂସ୍କୃତ ଭାଗବତକୁ ବ୍ୟାଖ୍ୟା କରି ବୁଝାଇଥିଲେ । ସେତିକିବେଳେ ଶ୍ରୀଚୈତନ୍ୟଙ୍କ ସହିତ ତାଙ୍କର ଭେଟ ହୋଇଥିଲା । ଜଗନ୍ନାଥଙ୍କ ବ୍ୟାଖ୍ୟାରେ ଶ୍ରୀଚୈତନ୍ୟ ପରମ ସନ୍ତୋଷ ଲାଭ କରି ତାଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ ବୋଲି କଥିତ ଅଛି । ସେ ଯାହାହେଉ ଜଗନ୍ନାଥ ଦାସ ଯେ ସଂସ୍କୃତ ସାହିତ୍ୟରେ ପ୍ରଗାଢ଼ଜ୍ଞାନ ଅର୍ଜନ କରିଥିଲେ ଏଥିରେ ସଂଦେହ କରିବାର କିଛି ନାହିଁ ।

କବି ବାହୁଗ୍ରନ୍ଥର ପ୍ରଣେତା ଭାବେ ଖ୍ୟାତି ଅର୍ଜନ କରିଥିଲେ ମଧ୍ୟ ଭାଗବତକାର ଜଗନ୍ନାଥ ଦାସ ନାମରେ ହିଁ ସର୍ବଜନବିଦିତ ଅଟନ୍ତି । ଭାଗବତ ଶାସ୍ତ୍ର ଅତି ଗୂଢ଼ତତ୍ତ୍ୱ ସମ୍ବଳିତ ଏକ ବୈଷ୍ଣବଗ୍ରନ୍ଥ । ଏହାକୁ ବୁଝିବାକୁ ଯେପରି

ବିଭିନ୍ନ ଶାସ୍ତ୍ରଜ୍ଞାନର ପ୍ରୟୋଜନୀୟତା ରହିଛି ସେହିପରି ଏହାର ତାତ୍ତ୍ୱିକ ବ୍ୟାଖ୍ୟା ସକାଶେ ଅଗାଧ ପାଣ୍ଡିତ୍ୟର ଆବଶ୍ୟକତା ରହିଛି । 'ବୁଦ୍ଧିର୍ଭାଗବତେ ବଧି', ଅର୍ଥାତ୍ ଭାଗବତ ହେଉଛି ମନୁଷ୍ୟ ବୁଦ୍ଧିର କଷଟି ପଥର । ସେଥିରେ ପୁଣି ଯେଉଁ ବାରଟି ସ୍କନ୍ଧ ବା ପରିଚ୍ଛେଦ ରହିଛି ସେ ମଧ୍ୟରେ ଏକାଦଶ ସ୍କନ୍ଧ ହେଉଛି ସବୁଠାରୁ ତତ୍ତ୍ୱପୂର୍ଣ୍ଣ ଓ ଗମ୍ଭୀର । ଏଥିରେ ଯେଉଁ ପ୍ରକାର ଉପଦେଶ ମାନ ବିଭିନ୍ନ କଥୟିତାଙ୍କ ମାଧ୍ୟମରେ ପ୍ରକାଶ କରାଯାଇଛି ତାହା ସମସ୍ତ ବ୍ରାହ୍ମଣ୍ୟ ଭକ୍ତି ଉପାସନାର ସାରମର୍ମ । ଏକ କଥାରେ କହିଲେ, ଏକାଦଶ ସ୍କନ୍ଧ ହେଉଛି ସମସ୍ତ ଭାଗବତ ଗ୍ରନ୍ଥର ସଂକ୍ଷିପ୍ତ ସାର ବା ଅମୃତବିନ୍ଦୁ । ଏହା ସଂସ୍କୃତ ଭାଗବତର ଅନୁସରଣରେ ଓଡ଼ିଆ ନବାକ୍ଷରୀ ବୃତ୍ତରେ ଲିଖିତ ।

ଏହି ଭାଗବତ ସଂସ୍କୃତ ଭାଗବତର କେବଳ ଆକ୍ଷରିକ ଅନୁବାଦ ନୁହେଁ କିମ୍ବା ତାହାର ନିଛକ ଅନୁସରଣ ନୁହେଁ; ଏପରିକି ଅନୁକରଣ ବି ନୁହେଁ । ଅଥଚ ସେଥିରେ ସ୍ଥାନେ ସ୍ଥାନେ ମୂଳଗ୍ରନ୍ଥର ଯେପରି ଅନୁବାଦ ଦୃଷ୍ଟ ହୁଏ ସେହିପରି ଅନୁକରଣ ଓ ଅନୁସରଣ ମଧ୍ୟ ଦେଖା ନ ଯାଉଛି ନୁହେଁ । ଏହା କବିଙ୍କ ଅଜ୍ଞାତସାରରେ ଘଟି ଯାଇଛି ବୋଲି କହିବା ଠିକ୍ ହେବ ନାହିଁ । କାରଣ, କବିଙ୍କ ସମସାମୟିକ ଓଡ଼ିଶାର ସାହିତ୍ୟିକ ପରିବେଶ ପ୍ରତି ଦୃଷ୍ଟିପାତ କଲେ ଏହାର ସତ୍ୟତା ହୃଦୟଙ୍ଗମ କରିହୁଏ ।

ପଞ୍ଚଦଶ ଶତାବ୍ଦୀର ଶେଷଭାଗ ଓ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭ କାଳରେ ଉତ୍କଳର ସାହିତ୍ୟିକ ବାୟୁମଣ୍ଡଳରେ ସଂସ୍କୃତ ଭାଷାର ପାରମ୍ପରିକ ଆବହାଓ୍ୟା ଏତେଦୂର କାୟା ବିସ୍ତାର କରିଥିଲା ଯାହା ଫଳରେ ନବ ବିବର୍ଦ୍ଧିତ ଓଡ଼ିଆ ପ୍ରାକୃତ ସର୍ବସାଧାରଣରେ ଲୋକପ୍ରିୟତା ଅର୍ଜନ କରିବା ତେଣେ ଥାଉ ସଂସ୍କୃତାଭିମାନୀ ଗୋଷ୍ଠୀବିଶେଷ ଦ୍ୱାରା ଘୃଣିତ ଓ ଅବାଞ୍ଛିତ ବୋଲି ବିବେଚିତ ହେଉଥିଲା । ଓଡ଼ିଆ ଭାଷା ମାଧ୍ୟମରେ କୌଣସି ପବିତ୍ର ଗ୍ରନ୍ଥ କିମ୍ବା ଶାସ୍ତ୍ର ରଚିତ ହେଲେ ତାହା ମହାପାପ ମଧ୍ୟରେ ପରିଗଣିତ ହେଉଥିଲା । ଏଣୁ ତତ୍କାଳୀନ ଓଡ଼ିଆ କବିମାନେ ଆପଣା ଭାଷାରେ ଗ୍ରନ୍ଥ ରଚନା କରିବାକୁ ସାହସ କରୁ ନ ଥିଲେ । ଏହା ପ୍ରମାଣିତ କରିବା ସକାଶେ ଆମକୁ ବେଶୀ ଦୂର ଯିବାକୁ ପଡ଼େ ନାହିଁ; ସ୍ୱୟଂ ଜଗନ୍ନାଥ ଦାସ ହିଁ ଏହାର ପ୍ରକୃଷ୍ଟ ଉଦାହରଣ । କଥିତ ଅଛି ଦାସେ ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ରଚନା କରିଥିବା ଯୋଗୁଁ ଏକା ଦାସେ ନୁହନ୍ତି ତାଙ୍କୁ ଜନ୍ମ ଦେଇଥିବା ଗାଆଁଟି ମଧ୍ୟ ପତିତ ବୋଲି ବିବେଚିତ ହୋଇଥିଲା । ଏଣୁ କପିଳେଶ୍ୱରପୁର ଶାସନ ଷୋଳ ଶାସନ ମଧ୍ୟରେ ଅପାଂକ୍ତେୟ ହୋଇ ପଡ଼ିଥିଲା । ଖାଣ୍ଟି ଶାସନୀ ବ୍ରାହ୍ମଣ ସଂସ୍କୃତଭାଷାରେ ବିଚକ୍ଷଣ ବିଦ୍ୱାନ୍ ଜଗନ୍ନାଥ ଦାସଙ୍କ ବେଳକୁ ଯଦି ଏଇୟା, ତା ହେଲେ କିଏ ବା ସେତେବେଳେ ସାହସ କରିବ ଓଡ଼ିଆ ଭାଷାରେ ଗ୍ରନ୍ଥ ରଚନା କରିବାକୁ ? କିଏ ବା ଇଚ୍ଛା କରିବ ଦୁର୍ବାର ଆକ୍ଷେପର ଜ୍ୱଳନ୍ତମୟାଶିଖା ଭିତରେ ଆତ୍ମୋତ୍ସର୍ଗ କରିବାକୁ ? ଏଇୟା ଥିଲା ସେଦିନର ସାହିତ୍ୟିକ ପରିବେଶ । ସେହି ପରିବେଶ ମଧ୍ୟରେ ଯେତେବେଳେ ସଂସ୍କୃତ ଭାଗବତପରି ଏକ ବୌଦ୍ଧିକ ତଥା ତାତ୍ତ୍ୱିକ ଶାସ୍ତ୍ରୀୟ ଗ୍ରନ୍ଥକୁ ସରଳ ଓଡ଼ିଆ ଭାଷାରେ କେହି ବ୍ୟକ୍ତ କରିବାର ଉଦ୍ୟୋଗ ଆରମ୍ଭ କରେ ସେତେବେଳେ ଉଦ୍ୟୋକ୍ତା ଦିଗ୍‌ବାରଣ ନ କରି ନୌକାଚାଳନ କରିଥିବେ ବୋଲି ମନେ ହୁଏ ନାହିଁ । ଏଣୁ ଜଗନ୍ନାଥ ଦାସ ତାଙ୍କ ଭାଗବତ ରଚନାରେ ଅନୁବାଦ, ଅନୁସରଣ, ଅନୁକରଣ ତିନିଟିଯାକ

ରଚନା ଶୈଳୀର ପ୍ରୟୋଗ ଦର୍ଶାଇ ସ୍ୱକୀୟ ଦିବ୍ୟ ଦୃଷ୍ଟିର ପରିଚୟ ଦେଇ ଯାଇଛନ୍ତି ।

ସାଧାରଣତଃ ଦେଖାଯାଏ, କୌଣସି ସାହିତ୍ୟ ସମୃଦ୍ଧିଶାଳୀ ହେବାକୁ ହେଲେ ତା ପକ୍ଷରେ ମୌଳିକ ତଥା ସୃଷ୍ଟିଶୀଳ ସାହିତ୍ୟର ପ୍ରୟୋଜନୀୟତା ଯେତିକି ବିଭିନ୍ନ ସାହିତ୍ୟର ମୌଳିକ କୃତିମାନଙ୍କର ଅନୁବାଦ ଓ ଅନୁସରଣର ଆବଶ୍ୟକତା ମଧ୍ୟ ତାଠାରୁ କୌଣସି ଗୁଣରେ କମ୍ ନୁହେଁ । ଖାଲି ସେତିକି ନୁହେଁ ସେଗୁଡ଼ିକର ଅନୁକରଣରେ ନୂତନ ସାହିତ୍ୟ ସୃଷ୍ଟି କରିବା ମଧ୍ୟ କ୍ରାନ୍ତଦର୍ଶିତା ଅଟେ । ଏହା ଯୁଗସ୍ରଷ୍ଟା ଦୂରଦ୍ରଷ୍ଟା କବିମାନଙ୍କର ଏକ ସ୍ୱାଭାବିକ ଗୁଣ । ଏହାଦ୍ୱାରା ରଚୟିତା ଆହୃତ ସାହିତ୍ୟର ଭାବଧାରାକୁ ନୂତନ ରଙ୍ଗରେ ରଞ୍ଜିତ କରି ଆପଣା ସାହିତ୍ୟର ଅଭିବୃଦ୍ଧି ସମ୍ପାଦନ କରନ୍ତି । ଏହି ଓଡ଼ିଆ ଭାଗବତରେ ଆମେ ତ୍ରିବିଧଧାରା ଅନୁସୃତ ହେବା ଦେଖିବାକୁ ପାଉଁ ।

ଯେଉଁ ସ୍ଥଳରେ ଗଭୀର ତତ୍ତ୍ୱ ସମ୍ବଳିତ ବିଷୟବସ୍ତୁର ଉପସ୍ଥାପନା କରିବାକୁ ହୁଏ ସେଠାରେ ଲେଖକ ପୂରାପୂରି ଆକ୍ଷରିକ ଅନୁବାଦ ପ୍ରତି ଦୃଷ୍ଟି ରଖେ ନାହିଁ । କାରଣ, ସେଠାରେ ଆକ୍ଷରିକତା ଅପେକ୍ଷା ଭାବର ପରାକାଷ୍ଠା ହିଁ ପ୍ରବଳ । ତେଣୁ ଭାଷାକୁ ସରଳ ଏବଂ ସାବଲୀଳ କରି ଭାବର ଅକ୍ଷୁର୍ଣ୍ଣତା ରକ୍ଷା କରିବାରେ ସେ ଯତ୍ନଶୀଳ ହୁଏ । ଫଳରେ ଗଭୀରତତ୍ତ୍ୱ ଗୁଡ଼ିକ ସହଜ ଓ ସୁବୋଧ୍ୟ ହୋଇ ପାଠକ ମନକୁ ଆହ୍ଲାଦିତ କରେ । ଉଦାହରଣ ସ୍ୱରୂପ—

'ଦ୍ୱା ସୁପର୍ଣ୍ଣାବେତୌ ସଦୃଶୌ ସଖାୟୌ
ଯଦୃଚ୍ଛୟୈତୌ କୃତନୀଡ଼ୌ ଚ ବୃକ୍ଷେ ।
ଏକସ୍ତୟୋଃ ଖାଦତି ପିପ୍ପଳାନ୍ନ-
ମନ୍ୟୋ ନିରନ୍ନୋଽପି ବଳେନ ଭୂୟାନ୍ ।।

ଆତ୍ମାନ ମନ୍ୟଂ ଚ ସ ବେଦ ବିଦ୍ୱା-
ନ ପିପ୍ପଳାଦୋ ନ ତୁ ପିପ୍ପଳାଦଃ ।
ଯୋଽବିଦ୍ୟୟା ଯୁକ୍ ସ ତୁ ନିତ୍ୟବଦ୍ଧୋ
ବିଦ୍ୟାମୟୋ ଯଃ ସ ତୁ ନିତ୍ୟ ମୁକ୍ତଃ ।।'

ସଂ । ଭା । ୧୧ । ୧୧

ଶ୍ଳୋକୋକ୍ତ ଦାର୍ଶନିକ ତତ୍ତ୍ୱକୁ ବୁଝାଇବାକୁ ଯାଇ ଜଗନ୍ନାଥ ଦାସେ ଲେଖିଛନ୍ତି—

'ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟଭାବ ବହି ।।
ସ୍ୱଭାବେ ବେନି ଶାଖେ ଥାନ୍ତି । ଏକ ଆରେକେ ନ ଦେଖନ୍ତି ।।

ସମାନ ଶକ୍ତି ସେ ବହନ୍ତି । ବଦ୍ଧ ବିମୁକ୍ତ ବେନି ଗତି ।।
ସେ ବୃକ୍ଷେ ଯେତେ ଫଳ ଫଳେ । ଏକ ଭୁଞ୍ଜଇ ତାହା ବଳେ ।।

ଏକ ବଞ୍ଚଇ ଉପବାସେ । ନିର୍ଲେପ ନିରଞ୍ଜନ ଆଶେ ।।
ନିତ୍ୟ ଆନନ୍ଦ ପରିପୂର୍ଣ୍ଣେ । ସକଳ ଦେଖଇ ନୟନେ ।।

| | | | |
|---|---|---|---|
| ନ ଜାଣେ ପୁଣି ନିଜ ପର | । | ଏଣୁ ନିର୍ମଳ ଜ୍ଞାନ ସାର | ॥ |
| ଯେ ହଂସ ବୃକ୍ଷ ଫଳ ଖାଇ | । | ଲୋଡଭେ ବନ୍ଧନ ତାର ଦେହୀ | ॥ |
| ଅଜ୍ଞାନେ ନ ଜାଣଇ କିଛି | । | ଏମନ୍ତେ ଚେନି ଅ ମ୍ଭା ଲକ୍ଷି | ॥ |

ଓ । ଭା । ୧୧ । ୧୨ । ୧୭—୨୫

ଏହା ଉଦ୍ଧୃତ ଶ୍ଳୋକର ଆକ୍ଷରିକ ଅନୁବାଦ ନୁହେଁ । ଏହାକୁ ଅନୁବାଦ କରିଥିଲେ ଉଦ୍ଦିଷ୍ଟ ତତ୍ତ୍ୱର ପ୍ରାଞ୍ଜଳ ପ୍ରକାଶ ଘଟନ୍ତା ନାହିଁ । ଏଣୁ କବି ତାର ସରଳ ବିଶ୍ଳେଷଣ ମାତ୍ର କରିବାକୁ କାନ୍ତକୋମଳ ପଦାବଳୀର ଆଶ୍ରୟ ନେଇ ଛନ୍ତି କେବଳ ଭାବାନୁସରଣରେ । ଏହାକୁ ଅନୁବାଦ କୁହାଯାଏ ନାହିଁ—ଏ ଅନୁସରଣ ମାତ୍ର ।

ସେହିପରି ଯେତେବେଳେ ମୂଳ ଶ୍ଳୋକର ଆକ୍ଷରିକ ଅନୁବାଦ କରିବାକୁ ହୁଏ ସେତେବେଳେ ସେ ଦେଖେ ଭାବାର୍ଥ ସୁବୋଧ୍ୟ କି ନା । ଯଦି ସୁବୋଧ୍ୟ ହେଲେ ଆକ୍ଷରିକ ଅନୁବାଦର ପନ୍ଥା ଗ୍ରହଣ କରେ । ଦେଖନ୍ତୁ—

'ପିଙ୍ଗଳା ନାମ ବେଶ୍ୟାସୀଦ୍ ବିଦେହ ନଗରେ ପୁରା ।
ତସ୍ୟା ମେ ଶିକ୍ଷିତଂ କିଂଚିନ୍ନିବୋଧ ନୃପନନ୍ଦନ ॥'

ସଂ । ଭା । ୧୧ । ୮ । ୨୨

ଅନୁବାଦ ହେଲା—

| | | | |
|---|---|---|---|
| 'ପୂର୍ବେ ଯେ ବିଦେହ ନଗରେ | । | ପିଙ୍ଗଳା ବେଶ୍ୟା ଥାଇ ଘରେ | ॥ |
| ତାହାର ଧର୍ମ୍ମଁ ମୁଁ ଆଚରି | । | ବୁଲଇ ଗୁରୁ ଶିକ୍ଷା କରି | ॥ |
| ଶୁଣ ନୃପତି ସାବଧାନେ | । | .... .... .... .... .... .... .... | ॥ |

ଓ । ଭା । ୧୧ । ୯ । ୫୫ । ୫୬

ସେହିପରି ମୂଳ ଶ୍ଳୋକର ଭାବକୁ ଅକ୍ଷୁଣ୍ଣ ରଖି କବି ଅନୁକରଣରେ ନିଜର ସ୍ୱାତନ୍ତ୍ର୍ୟ କିପରି ପରିସ୍ଫୁଟ କରନ୍ତି ତାହା ଦେଖିବାର କଥା । ଏହି ପନ୍ଥା ଉପରୋକ୍ତ ଦୁଇଟିଯାକ ଅପେକ୍ଷା ଅଧିକ କଷ୍ଟସାଧ୍ୟ । ଏଥିରେ ଲେଖକଙ୍କ ଆତ୍ମିକ ପ୍ରତିଭାର ଯେପରି ବିକାଶ ଦିଶେ ସେହିପରି ମୌଳିକ ଜ୍ଞାନର ମଧ୍ୟ ଆଭାସ ମିଳେ । ଉଦାହରଣ—

'ଜିହ୍ୱୈକତୋଽମୁମପକର୍ଷତି କର୍ହି ତର୍ଷା
ଶିଶ୍ନୋଽନ୍ୟତସ୍ତ୍ୱଗୁଦରଂ ଶ୍ରବଣଂ କୁତଶ୍ଚିତ୍ ।

ଘ୍ରାଣୋଽନ୍ୟତଶ୍ଚପଳଦୃକ୍ କ୍ୱଚ କର୍ମ୍ମଶକ୍ତି—

ର୍ବହ୍ୱ୍ୟଃ ସପତ୍ନ୍ୟ ଇବ ଗେହପତିଂ ଲୁନନ୍ତି' ॥

ସଂ । ଭା । ୧୧ । ୯ । ୨୭

ଅତ୍ରତ୍ୟ ଭାବର ଅନୁକରଣରେ ଜଗନ୍ନାଥ ଦାସ ଲେଖିଲେ—

| | | |
|---|---|---|
| ଇନ୍ଦ୍ରିୟେ ଏହାକୁ ଆବୋରି | ଭୁଞ୍ଜନ୍ତି ଜଣେ ଜଣେ କରି | ।। |
| ଶ୍ମଶାନେ ମୃତପିଣ୍ଡ ଯେହ୍ନେ | ଶ୍ୱାନ ଶୃଗାଳଙ୍କ ବଦନେ | ।। |
| ରସ ଲାଳସେ ଜିହ୍ୱା ଧରେ | ଆହାର ଅର୍ଥେ କର୍ମ କରେ | ।। |
| ନିଜ ସ୍ୱଭାବ ଷଡରସେ | ଭ୍ରମଇ ନାନା ଦେଶେ ଦେଶେ | ।। |
| ତୃଷାର ଇଚ୍ଛାବଳେ ପୁଣି | ମାଗଇ ସୁଶୀତଳ ପାଣି | ।। |
| ନ ପାଇ କରେ ବହୁ ପ୍ରାସ | ଏମନ୍ତେ ପ୍ରାଣୀ ଯାଏ ନାଶ | ।। |
| ଇନ୍ଦ୍ରିୟ ଧରେ ପୁଣି ବଳେ | ଭ୍ରମଇ ସେ ମୈଥୁନ ଫଳେ | ।। |
| ଅମୃତ ପ୍ରାୟେ ଯୋନି ଦିଶେ | ଏଣୁ ଭ୍ରମଇ କାମ ବଶେ | ।। |
| ଶୀତ ତପତ ଘର୍ମ ଧରେ | ଅଗ୍ନି ପବନ ଆଶ୍ରେ କରେ | ।। |
| କ୍ଷୁଧା ଅନଳେ ଧରେ ପେଟ | ଆତ୍ମାକୁ କରେ ଛଟପଟ | ।। |
| ଯାବତ ନ ପୂରେ ଉଦର | ତାବତ ଜ୍ଞାନ କାହିଁ ତାର | ।। |
| ଶ୍ରବଣେ ଧରେ ପୁଣି ପୁଣି | ସ୍ତୁତି ନିନ୍ଦନ ବାକ୍ୟ ଶୁଣି | ।। |
| ନାସିକା ଧରେ ଗନ୍ଧ ଆଶେ | ଏଣୁ ଭ୍ରମଇ ଶୁଚିବ ସେ | ।। |
| ଚକ୍ଷୁ ଧରଇ ରୂପ ଅର୍ଥେ | ଏଣୁ ଭ୍ରମଇ ନାନା ପଥେ | ।। |
| ଅନ୍ତେ ଧରଇ କର୍ମରଶି | ବେଷ୍ଟିତ ହୁଏ କାଳପାଶୀ | ।। |
| ଏଣୁ ଏ ସାଧାରଣ ଦେହେ | ଜ୍ଞାନୀକି ବସ୍ତୁଜ୍ଞାନ ନୁହେଁ | ।। |
| ବହୁତ ସପତଣୀ ଯେହ୍ନେ | ସ୍ୱାମୀ ମାରନ୍ତି ଅପମାନେ | ।। |
| ଜୀବର ଅଳପ ଶକତି | ଶତେ ଯୁବତୀ ଏକ ପତି | ।। |

ଓ । ଭା ୧୧ । ୧୦ । ୮୪-୧୦୨

ଏ ସବୁ ଦେଖିଲେ ଅନୁମାନ ହୁଏ, ତ୍ରିବିଧଧାରା ମଧ୍ୟରୁ କୌଣସି ଗୋଟିକୁ ଅବଲମ୍ବନ ନ କରି ସ୍ୱକୀୟ ଭାଗବତରେ ତିନୋଟିଯାକ ଶୈଳୀର ଅବତାରଣା ଦ୍ୱାରା କବି ସୂକ୍ଷ୍ମଦର୍ଶିତାର ପ୍ରକାଶ୍ୟ ପ୍ରମାଣ ଦେଇ ଯାଇଛନ୍ତି । ଅତଏବ କୁହାଯାଇ ପାରେ ଭାଗବତ ଶୈଳୀର ଅନୈକାନ୍ତିକତା ତାଙ୍କ ଅଜ୍ଞାତସାରରେ ଘଟି ନାହିଁ । ବରଂ କବି ଜାଣିଶୁଣି ସେ ସବୁ ଗ୍ରହଣ କରିଛନ୍ତି । ସେ ଭଲଭାବ ଜାଣିଥିଲେ ଓଡ଼ିଆ ରଚନାକୁ ବୁଦ୍ଧିମନ୍ତ ତଥା ଲୋକପ୍ରିୟ କରିବାକୁ ହେଲେ ବିଭିନ୍ନ ପ୍ରଣାଳୀ ଅବଲମ୍ବନ କରିବା ବାଞ୍ଛନୀୟ ।

ସାଧାରଣତଃ ସାହିତ୍ୟର ଉତ୍କର୍ଷ ପ୍ରତିପାଦକ ଯେଉଁ କେତେକ ଉପାଦାନ ସର୍ବତ୍ର ସ୍ୱୀକୃତି ଲାଭ କରିଆସିଛି ସେ ମଧ୍ୟରୁ ଭାଷାର ଚଳିଷ୍ଣୁତା, ମର୍ମାର୍ଥ ପ୍ରକାଶନରେ ଦକ୍ଷତା, ଶବ୍ଦାବଳୀର ସୁଷମ ପ୍ରୟୋଗ, ସାବଲୀଳ ପଦଯୋଜନା, ଅଳଂକାର ବୈଚିତ୍ର୍ୟ, ଅନାବିଳ ରସ ସୃଷ୍ଟି ଇତ୍ୟାଦି ପ୍ରଧାନ । ଏହାରି ଉପରେ ସାହିତ୍ୟର ମାନ ନିର୍ଦ୍ଧାରିତ ହୁଏ । ଯେଉଁ ସାହିତ୍ୟରେ ଏ ସବୁର ଯେତିକି ସୁଷମ ପ୍ରୟୋଗ ଦୃଷ୍ଟ ହୁଏ ତାହା ସେତିକି ଉତ୍କୃଷ୍ଟ ବୋଲି ବିବେଚିତ । ଏହି ଦୃଷ୍ଟିରେ ଓଡ଼ିଆ ଭାଗବତକୁ ବିଗ୍ଭର କରିବାକୁ ଗଲେ ଜଗନ୍ନାଥ ଦାସ ଏକା ସେକାଳର ନୁହନ୍ତି ସବୁକାଳରେ ସବୁଶ୍ରେଣୀ ପାଠକ ପାଠିକାଙ୍କର ନମସ୍ୟ କବି ଭାବେ ସମ୍ମାନିତ ହୋଇ ଆସୁଥିବେ । ବିଶେଷକରି ତାଙ୍କ ଭାଗବତ ଏକାଦଶ ସ୍କନ୍ଧରେ ଯେଉଁ ପ୍ରଣୟନ ପରିପାଟୀ ସେ ପ୍ରଦର୍ଶନ କରିଯାଇଛନ୍ତି ତାହା ଯୁଗେ ଯୁଗେ ତାଂକୁ ଅମର କରି ରଖିବ । କାରଣ, ଉପନିଷଦତତ୍ତ୍ୱର ସାରଭୂତ ଗୀତା

ପରି ସମଗ୍ର ଭାଗବତର ସାରାଂଶ ଏକାଦଶ ସ୍କନ୍ଧ । ଏଥିରେ ନିମି-ନବବିପ୍ର, ଯଦୁ-ଅବଧୂତ, ଶ୍ରୀକୃଷ୍ଣ-ଉଦ୍ଧବ ସମ୍ବାଦ ମାଧ୍ୟମରେ ସନାତନ ହିନ୍ଦୁ ଧର୍ମର ସାରକଥା ଗୁଡ଼ିକ ଅତି ଚମତ୍କାରଭାବେ ପ୍ରକାଶ କରାଯାଇଛି । ମୂଳ ସଂସ୍କୃତ ରଚନାର ମୁଖ୍ୟ ବିଷୟକୁ ଅବିକୃତ ଭାବେ ଗ୍ରହଣ କରିଥିଲେ ସୁଦ୍ଧା ସ୍ୱକୀୟ ଚିନ୍ତାସ୍ୱାତନ୍ତ୍ର୍ୟକୁ କବି ଅକ୍ଷୁଣ୍ଣ ରଖି ପାରିଛନ୍ତି । ସଂସ୍କୃତ ଭାଗବତର ବାର ସ୍କନ୍ଧ ଭିତରେ ତିନି ଶହ ପଇଁତିରିଶି ଅଧ୍ୟାୟ ଥିବା ସ୍ଥଳେ ଓଡ଼ିଆ ଭାଗବତରେ ତିନି ଶହ ବୟାଳିଶିଟି ଅଧ୍ୟାୟ ରହିଛି । ଆଲୋଚ୍ୟ ଏକାଦଶ ସ୍କନ୍ଧର ଅଧ୍ୟାୟ ସଂଖ୍ୟାକୁ ମଧ୍ୟ ଦାସେ ସମାନ କରି ରଖି ନାହାନ୍ତି । ମୂଳ ଏକାଦଶ ସ୍କନ୍ଧ ଦ୍ୱିତୀୟ ଅଧ୍ୟାୟଟିକୁ ଦାସେ ଦୁଇଟି ଅଧ୍ୟାୟରେ ଭାଗ କରିଛନ୍ତି । ଓଡ଼ିଆ ଏକାଦଶ ସ୍କନ୍ଧର ୨ୟ ଅଧ୍ୟାୟ ସଂସ୍କୃତ ୨ୟ ଅଧ୍ୟାୟର ୪୩ ଶ୍ଳୋକଠାରେ ସମାପ୍ତ ହୋଇଛି । ତତ୍ରତ୍ୟ ୫୪ ଶ୍ଳୋକଠାରୁ ଓଡ଼ିଆ ତୃତୀୟ ଅଧ୍ୟାୟ ଆରମ୍ଭ କରାହୋଇ ସଂସ୍କୃତ ଦ୍ୱିତୀୟ ଅଧ୍ୟାୟ ସହିତ ଶେଷ ହୋଇଛି । ଏଣୁ ମୂଳର ୩୧ ଅଧ୍ୟାୟ ବଦଳରେ ଓଡ଼ିଆରେ ୩୨ଟି ଅଧ୍ୟାୟ ଦେଖାଯାଏ । ସେ ଯାହାହେଉ କବି ଏହି ସ୍କନ୍ଧଟିରେ ଯେଉଁ ଅଲୌକିକ କାବ୍ୟିକ ପ୍ରତିଭାର ସଙ୍କେତ ରଖି ଯାଇଛନ୍ତି ତାହା ବିଶେଷଭାବେ ଲକ୍ଷଣୀୟ ।

ଆଗରୁ କୁହାଯାଇଛି, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି କବିଙ୍କର ଯେଉଁ ପ୍ରଗାଢ଼ ଅନୁରାଗ ତାହାହିଁ ତାଙ୍କୁ ଓଡ଼ିଆ ଭାଗବତ ରଚନା ପାଇଁ ପ୍ରରୋଚିତ କରିଥିଲା । ଫଳରେ ସେ ଉତ୍କୃଷ୍ଟ ସାହିତ୍ୟୋପଯୋଗୀ ସକଳ ପ୍ରଣାଳୀର ଆଶ୍ରୟ ନେଇଥିଲେ, ଯାହାଦ୍ୱାରା ଏକାଦଶ ସ୍କନ୍ଧ ବର୍ଣ୍ଣିତ ଗଭୀର ଦାର୍ଶନିକ ତତ୍ତ୍ୱମାନ ପ୍ରାଞ୍ଜଳ ଭାବେ ପ୍ରକଟିତ ହୋଇ ପାରିଥିଲା । ତାଙ୍କର ଅସାଧାରଣ ପାଣ୍ଡିତ୍ୟ, ଭଗବତ୍ ଚରଣାରବିନ୍ଦରେ ଅଚଳା ଭକ୍ତି, ନିରହଙ୍କାର ଈଶ୍ୱର ବିଶ୍ୱାସ ଏବଂ ମାତୃଭାଷା ପ୍ରତି ନିର୍ଭୀକ ମମତା ଏକାଦଶ ସ୍କନ୍ଧର ପ୍ରତି ପଂକ୍ତିରେ ଜୀବନ୍ତ ହୋଇ ଉଠିଛି ।

ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ବ୍ରାହ୍ମଣ ଜଗନ୍ନାଥ ଭଣି । ଭକତ ପ୍ରେମ ତରଙ୍ଗିଣୀ ॥
ହୀନ ପାମର ଜ୍ଞାନ ମୋର । ପଣ୍ଡିତେ ମୋ ଦୋଷ ନ ଧର ॥'

ପ୍ରଭୃତି ଭଣିତି କବିଙ୍କ ଭକ୍ତିସୁଲଭ ନମ୍ରତାର ଯେପରି ପରିଚାୟକ ସେହିପରି ସଂସ୍କୃତାଭିମାନୀ ଗୋଷ୍ଠୀପ୍ରତି ତୀବ୍ର କଟାକ୍ଷପାତ ବୋଲି ମନେହୁଏ । ଏହି ହେତୁରୁ କବିଙ୍କ ଜନ୍ମପୂତ କପିଳେଶ୍ୱରପୁର ଶାସନକୁ ଅପାଙ୍କ୍ତେୟ ରଖିବା, ଓଡ଼ିଆ ପଦ୍ୟଶୈଳୀର ଆଦର୍ଶ ଭାଗବତକୁ 'ତେଲି ଭାଗବତ' ଆଖ୍ୟା ଦେବା କିମ୍ବଦନ୍ତୀକୁ ବିଶ୍ୱାସ ନକରି ରହି ହୁଏ ନାହିଁ । ଏହା ସତ୍ତ୍ୱେ ବାହାରକୁ ଫୁଟୁ ନ ଥିଲେ ହେଁ ତଦାନୀନ୍ତନ ସମାଜ ଦାସଙ୍କ ଅଲୌକିକ କାବ୍ୟକୃତିରେ ମୁଗ୍ଧ ହୋଇ ନଥିଲେ କହିବା ଠିକ୍ ହେବ ନାହିଁ । କାରଣ, ତା ଯଦି ହୋଇ ନଥାନ୍ତା ଭାଗବତ ଭିତର,

'ପ୍ରାଣୀର ଭଲମନ୍ଦ ବାଣୀ । ମରଣ କାଳେ ତାହା ଜାଣି' ॥
'ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୁହେଁ ସୁଖେ ପ୍ରୟୋଜନ' ॥
'ସନ୍ନ କଲ୍ପଇ ଯେତେ ପଳେ । ଦଇବ ହରେ ତାହା ବଳେ' ॥

ପ୍ରଭୃତି ଖଣ୍ଡିତ ପଦାବଳୀମାନ ଲୋକମୁଖରେ ଏତେ ପରିମାଣରେ ପ୍ରଚଳିତ ହୁଅନ୍ତା କିମିତି ? ଏଣୁ ଜଣାପଡେ ଓଡ଼ିଆ ଭାଗବତ ବିଶେଷତଃ ଏକାଦଶସ୍କନ୍ଧ ସେ କାଳରେ ମଧ୍ୟ ବହୁ ଜନାଦୃତ ଥିଲା ।

ତା'ଛଡ଼ା ଏହି ସ୍କନ୍ଧରେ ଉଚ୍ଚାଙ୍ଗ ସାହିତ୍ୟୋପଯୋଗୀ ପ୍ରକ୍ରିୟାମାନ ବିଧିବଦ୍ଧ ଭାବେ ପ୍ରଯୁକ୍ତ ହୋଇଥିବା ଯୋଗୁଁ ସାହିତ୍ୟ ରସିକଙ୍କ ଦୃଷ୍ଟିରେ ଏହା ଅନ୍ୟାନ୍ୟ ସ୍କନ୍ଧ ଅପେକ୍ଷା ଅଧିକତର ଆଦର ହୋଇପାରିଛି । ଲୋକଙ୍କ ବିଶ୍ୱାସ, ସଂପୂର୍ଣ୍ଣ ଭାଗବତଟି ନ ପଢ଼ି କେବଳ 'ଏକାଦଶନ' (ଏକାଦଶ ସ୍କନ୍ଧ)ଟି ପଢ଼ିଦେଲେ ଭାଗବତ ପଢ଼ିବା ଫଳ ମିଳିଯାଏ । ଏଥି ସକାଶେ କାର୍ତ୍ତିକ-ମାଘ-ବୈଶାଖ ପ୍ରଭୃତି ପୁଣ୍ୟମାସରେ ବ୍ରତାଚାରୀମାନେ ସେହି ସେହି ମାସ-କୃତ୍ୟ-ନିର୍ଦ୍ଦେଶକ ପୁରାଣ ସହିତ ଏକାଦଶ ସ୍କନ୍ଧକୁ ମିଶାଇ ପାଠ କରନ୍ତି । ଏହା କେବଳ ନୀତି-ଉପଦେଶ ଯୋଗୁଁ ନୁହେଁ ଏଥିରେ ପୌରାଣିକ ମାହାତ୍ମ୍ୟ ସହିତ ନିଗୂଢ଼ ଦାର୍ଶନିକ ତଥ୍ୟମାନ ବ୍ୟାଖ୍ୟାତ ହୋଇଥିବା ହେତୁ କି ପଣ୍ଡିତ, କି ମୂର୍ଖ, କି ବ୍ରାହ୍ମଣ, କି ସନ୍ନ୍ୟାସୀ ସମସ୍ତଙ୍କ ଦ୍ୱାରା ଆଦୃତ ହୋଇଆସୁଛି । ଏ ସବୁର ଉଦାହରଣ ଦେବା ନିଷ୍ପ୍ରୟୋଜନ ତଥାପି ଉଚ୍ଚକୋଟିର ଯେଉଁ କେତୋଟି ସାହିତ୍ୟିକ ଉପାଦାନ ଏଥିରେ ସନ୍ନିବେଶିତ ସେ ମଧ୍ୟରୁ କେତେକର ସୂଚନା ତଳେ ଦିଆଗଲା ।

'ତୋତେ ହେ ତ୍ରିବିକ୍ରମ ରୂପ । ଆମ୍ଭେ ଯେ ଦେଖିଲୁ ପ୍ରତ୍ୟକ୍ଷେ ॥
ତୋ ନାଭିକମଳୁ ପ୍ରତ୍ୟକ୍ଷେ । ଚରଣ ଗଲା ଅନ୍ତରୀକ୍ଷେ ॥
କେ କରିପାରେ ତାହା ହେତୁ । ଅଦ୍ଭୁତ ଯେହ୍ନେ ଧୂମକେତୁ ॥
ବ୍ରହ୍ମାଣ୍ଡେ ଚରଣ ବାଜିଲା । ଶବଦେ ପୃଥିବୀ କମ୍ପିଲା ॥
ବ୍ରହ୍ମାଣ୍ଡ ଫାଟି ପାଦତଳେ । ଗଙ୍ଗା ପଡ଼ିଲା ଅନ୍ତରାଳେ ॥
ତିନି ଭୁବନ ତେଜ ରାଶି । ଧ୍ୱଜ ପତାକା ପ୍ରାୟେ ଦିଶି ॥
ଅସୁର କୁଳ ଭୟଙ୍କର । ଆମ୍ଭର ଦୁଃଖ ଭୟ ହର ॥

ଓ । ଭା ୧୧ । ୭ । ୫୦ ।୫୬

ଏହା କୃଷ୍ଣ ଦର୍ଶନ ସକାଶେ ଦ୍ୱାରକା ପୁରକୁ ଆସିଥିବା ଇନ୍ଦ୍ରାଦି ଦେବ ଗଣଙ୍କ ସ୍ତୁତିବିଶେଷ । ଏଠାରେ ଭାଷାର ବଳିଷ୍ଠତା ଲକ୍ଷଣୀୟ । ସେହିପରି ଦ୍ୱାଦଶ ଅଧ୍ୟାୟ ବର୍ଣ୍ଣିତ ଜୀବ-ପରମ ତତ୍ତ୍ୱ । ସେଠାରେ ଜୀବାତ୍ମା ଓ ପରମାତ୍ମାର ଭେଦ ଦର୍ଶାଇବା ପାଇଁ ବୈଦିକ ଯୁଗରୁ ଯେଉଁ 'ଊର୍ଦ୍ଧ୍ୱମୂଳ-ଅଧଃଶାଖ' ବୃକ୍ଷର କଳ୍ପନା ହୋଇଆସିଛି ତାଦୃଶ ଶରୀର ବୃକ୍ଷମଧ୍ୟରେ ଜୀବ ଓ ପରମ ରୂପ ଦୁଇଟି ପକ୍ଷୀ କିପରି ଏକତ୍ର ବସବାସ କରିଆସୁଛନ୍ତି ତାହାର ଏକ ସୁନ୍ଦର ବିଶ୍ଳେଷଣ ପରିସ୍ଫୁଟ । ଯାକୁ ହିଁ କହନ୍ତି କବିର କବିତ୍ୱ—ରହସ୍ୟ ଉଦ୍‌ଘାଟନର କାଉଁରିକାଠି ।

ଏହାଛଡ଼ା, ଭାଷା ହେଉଛି ସାହିତ୍ୟର ବାହନ । ଭାଷାର ବ୍ୟାପକତା ନେଇ ସାହିତ୍ୟର ବଳିଷ୍ଠତା । ଏହି କଥା ଜଗନ୍ନାଥ ଦାସଙ୍କ ଦୃଷ୍ଟିକୁ ଏଡ଼ାଇ ପାରି ନଥିଲା ତେଣୁ ସେ ଭାଗବତ ପରି ପୁଣ୍ୟଗ୍ରନ୍ଥରେ ସୁଦ୍ଧା ନିପଟ ଲୌକିକ ତଥା ଗ୍ରାମ୍ୟ ଓଡ଼ିଆ ଶବ୍ଦମାନ ପ୍ରୟୋଗ କରି ଯାଇଛନ୍ତି । ସେଥି ସକାଶେ ଅବଶ୍ୟ ତାଙ୍କୁ ବହୁ ଆକ୍ଷେପୋକ୍ତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତଥାପି ସେ ସେଥିରେ ପଥଭ୍ରାନ୍ତ

ହୋଇ ନଥିଲେ । ଅତଏବ ତାଙ୍କ ଗ୍ରନ୍ଥରେ ଯେବଣ, କେବେହେଁ, ଶୁଣିତେ, ଆବୋରି, ଛାଉଣି, ବଧ ପ୍ରଭୃତି ଖାଣ୍ଟି ଓଡ଼ିଆ ଶବ୍ଦ ସହିତ ଆତ୍ମ ସଂଯମନ, ସୁସାଧୁ ସୁନ୍ଦର ଶରୀର, ହସ୍ତକଙ୍କଣ, ଉଚ୍ଚକୂପ, ପତିବ୍ରତା, ଶିରୋମଣି ପ୍ରଭୃତି ତତ୍ସମ ଶବ୍ଦମାନଙ୍କର ସୁଷମ ପ୍ରୟୋଗ ଦେଖାଯାଏ । ତା'ଛଡ଼ା ନଇଲା (ନ ଆସିଲା), ନିର୍ମାଇ (ନିର୍ମାଣ କରି), ଥାଇ (ଥାଏ), ଦେହି (ଦେହ) ପ୍ରଭୃତି ନବ ନବ ପ୍ରୟୋଗ ମଧ୍ୟ କବିଙ୍କ ଉନ୍ମେଷଶାଳିନୀ ପ୍ରତିଭାର ପରିଚାୟକ ।

ଏହା ସହିତ କବିଙ୍କ ଅନାବିଳ ରସ ଓ ଅଳଂକାର ପ୍ରୟୋଗ ଦକ୍ଷତା ଆହୁରି ଚମତ୍କାର । ପିଙ୍ଗଳା ପରି ଏକ ବେଶ୍ୟାତ ଉପାଖ୍ୟାନ, ଯାହା'ର ବର୍ଣ୍ଣନାରେ ଯେତେତ ସଂଯତ ହେଲେ ସୁଦ୍ଧା ଶ୍ଳୀଳତା ରକ୍ଷା କରିବା ସହଜ ନୁହେଁ ସେଥିରେ ମଧ୍ୟ କବିଙ୍କ ରଚନା ସଂଯମ ଅତି ଆଶ୍ଚର୍ଯ୍ୟ ଧରଣର । ଏ ପ୍ରସଙ୍ଗ ଯେପରି ରସ ସର୍ଜକ ସେହିପରି ହୃଦୟୋଲ୍ଲାସକ । ତା'ଛଡ଼ା କାବ୍ୟାଳଂକାର ପ୍ରୟୋଗରେ ମଧ୍ୟ ତାଙ୍କର ବିଚକ୍ଷଣତା ଅଭିନନ୍ଦନୀୟ । ଉଦାହରଣ—

ଉପମା—

'କୁଧେନୁ ବାନ୍ଧି ଗୃହେ ଯେହ୍ନେ । ନିରଣ ହୋନ୍ତି କ୍ଷୀର ପାନେ' ।।
ଦୁଷ୍ଟା ଭାରିଯା ଦୋଷ ଦେଖି । ଯେ ଗୃହେ କାମ ଲୋଭେ ରଖି' ।।

ଦୃଷ୍ଟାନ୍ତ—

'ଦେଖ ଏ ଯେତେ ନଦ ନଦୀ । ପ୍ରବାହେ ମିଳନ୍ତି ଜଳଧି ।।
ଲବଣ ଜଳେ ସେ ମିଶନ୍ତି । ସ୍ୱନାମ ଗୁଣ ପାଶୋରନ୍ତି ।।
ଗୋପ କାମିନୀ ଏହି ମତେ । ମନ ଜୀବନ ଦେଇ ମୋତେ' ।।

ରୂପକ—

'ତ୍ରିଗୁଣ ରଜ୍ଜୁ କରେ ଧରି । ମୃଗୀ ନଚ୍ଚାଏ ନରହରି' ।।

ସ୍ୱଭାବୋକ୍ତି—

'ବନ୍ଧନ ଡାଳ ମଧ୍ୟେ ଦଣ୍ଡେ । ବେନି ବାଳକ ଧଉପଉଡ଼େ ।।
ଉଡନ୍ତି ପ୍ରାଣର ଭିକଳେ । ନାଦ କରନ୍ତି କୋଳାହଳେ ।।

ଅର୍ଥାନ୍ତରନ୍ୟାସ—

'ଏ ଯେବେ ଦୁଃଖ ସୁଖ ବୁଝେ । ସମୂଳେ ମୃତ୍ୟୁ ସଙ୍ଗେ ଯୁଝେ ।।
ବୁଦ୍ଧି ବିବେକ ଜ୍ଞାନ ବଳେ । ମରଣ ଜିଣିପାରେ ହେଳେ' ।।

ଏହିସବୁ ଦୃଷ୍ଟିରୁ ବିଚାର କଲେ ଜଣାଯାଏ, ଭକ୍ତକବି ଜଗନ୍ନାଥ ଦାସ ଯେତେ ଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି ସେ ମଧ୍ୟରେ ଓଡ଼ିଆ ଭାଗବତ ଯେପରି ଏକ ଉଚ୍ଚକୋଟିର ସାହିତ୍ୟ କୃତିରୂପେ ବିବେଚିତ ସେହିପରି ଭାଗବତ ମଧ୍ୟରେ ଏକାଦଶ ସ୍କନ୍ଧଟି ସର୍ବଶ୍ରେଷ୍ଠ ବୋଲି ସ୍ୱୀକୃତ । ଏଥିରେ କବିଙ୍କର ଐକାନ୍ତିକ ଭକ୍ତିମତ୍ତା, ଅଗାଧ ଶାସ୍ତ୍ରଜ୍ଞାନ, ଓଡ଼ିଆ ଭାଷା ପ୍ରତି ଅକୁଣ୍ଠ ମମତା, ନବନବୋନ୍ମେଷଶାଳିନୀ ପ୍ରଜ୍ଞାର ମଧୁର ସମନ୍ୱୟ ପ୍ରାଣବନ୍ତ ହୋଇ ଉଠିଛି । ଏଣୁ ଏକାଦଶ ସ୍କନ୍ଧଟି ଓଡ଼ିଆ ଭାଗବତକାରଙ୍କ ମହାନ୍ ପ୍ରତିଭାର ଏକ ସୂକ୍ଷ୍ମ ପ୍ରକାଶ କହିଲେ ଅସଙ୍ଗତ ହେବ ନାହିଁ ।

# ପଞ୍ଚ ସଖା ଓ ଜଗନ୍ନାଥ ଦାସ

ପଣ୍ଡିତ ଶ୍ରୀ କୁଳମଣି ପାଠୀ ଶର୍ମା, ଲେମ୍ବାଳ, କଟକ

ପୁଣ୍ୟଭୂମି ଉତ୍କଳର ଲୀଳାଶୁକ, ଶ୍ରୀମଦ୍‌ଭାଗବତର ବ୍ୟାଖ୍ୟାକାର, ଜାତୀୟ ଭାବନାର ନିୟାମକ, ବୈଷ୍ଣବ ଧର୍ମର ପ୍ରଚାରକ, ସଂଗ୍ରାହକ, ପ୍ରସାରକ, ଗାୟକ, ଭକ୍ତିରସର ମୂର୍ତ୍ତିମନ୍ତ ବିଗ୍ରହ, ଭକ୍ତକବି ଜଗନ୍ନାଥ ଦାସ, ଶତ ଶତ ବର୍ଷ ଧରି ଉତ୍କଳୀୟ ଜନଗଣମାନସ ରତ୍ନ ଫଳକରେ ଅଙ୍କିତ ହୋଇ ଜାତୀୟ ଜୀବନ ଚେତନାକୁ ଉଦ୍‌ବୋଧନ ଦେଇ ଏ ଜାତିର ଚିର ନମସ୍ୟ ହୋଇ ରହିଛନ୍ତି ଓ ରହିଥିବେ ।

ଜାତୀୟ ଧର୍ମିକ ଚେତନାର ଅଧଃପତନ ସମୟରେ ଆଧ୍ୟାତ୍ମିକ ଭାବଧାରାର ରହସ୍ୟକୁ ସରଳ ପ୍ରାଞ୍ଜଳ ରସାଳ ଓ ସୁନ୍ଦରଭାବରେ ତଥା ଭାଷାରେ ପରିପ୍ରକାଶ କରି ସେ ପ୍ରତିଷ୍ଠା ଲାଭ କରିଛନ୍ତି ତା ନୁହେଁ ଏହି କ୍ଷଣଜନ୍ମା ଯୁଗମାନବ ମହାପୁରୁଷ ସ୍ୱୀୟ ଅସାଧାରଣ ନବନବୋନ୍ମେଷଶାଳିନୀ ପ୍ରତିଭା ବଳରେ ନାଗାନ୍ତୀ ବେଦାନ୍ତୀ ସିଦ୍ଧାନ୍ତୀ ଯୋଗୀନ୍ଦ୍ର ଏବଂ ତାନ୍ତ୍ରିକମାନଙ୍କୁ ଧ୍ୱସ୍ତ-ବିଧ୍ୱସ୍ତ କରି ସମସ୍ତ ସ୍ଖଳିତ ମତବାଦକୁ ଖଣ୍ଡନ କରି ଜଗନ୍ନାଥ ଭକ୍ତମାର୍ଗର ପରାକାଷ୍ଠା ପ୍ରଦର୍ଶନ କରି ଚିର ଅମର ହୋଇ ରହିଛନ୍ତି ।

ଅନନ୍ୟସାଧାରଣ-ସାଧନସିଦ୍ଧସାଧକ, ମହାତ୍ମା ଜଗନ୍ନାଥ ଦାସ ଅଧୀତି ବୋଧାଚରଣ ପ୍ରଚାରଣ ବଳରେ ଉତ୍କଳୀୟ ପଣ୍ଡିତମଣ୍ଡଳିଗର୍ବଶିଖରକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ତାନ୍ତ୍ରିକ ତନ୍ତ୍ର କ୍ରିୟାରେ ଯୋଗୀଙ୍କ ଯୋଗସାଧନରେ କର୍ମୀମାନଙ୍କ କର୍ମପ୍ରବାହରେ ତଥା ସାଧକଗଣଙ୍କ ସାଧନ ପଦ୍ଧତିରେ ଅଭିନବ ସଂସ୍କାର ଆନୟନ କରିବାରେ ସେ ଥିଲେ ଦକ୍ଷ ସିଦ୍ଧହସ୍ତ । ସର୍ବୈଶ୍ୱର୍ଯ୍ୟ ଗୁଣଗଣବିମଣ୍ଡିତ ଅଚ୍ୟୁତାନନ୍ଦ ବଳରାମ ଯଶୋବନ୍ତ ଅନନ୍ତ ପ୍ରଭୃତି ସଖାମାନଙ୍କ ସହିତ ସମ୍ମିଳିତ ହୋଇ ଯୁଗେ ଯୁଗେ ଦୁଃଖ ଦୁର୍ଦ୍ଦଶାଗ୍ରସ୍ତ ତାପକ୍ଲିଷ୍ଟ ମାନବଜାତିର ଉପକାର ସାଧନ ନିମିତ୍ତ ମୁହୁର୍ମୁହୁ ଜନ୍ମ ପରିଗ୍ରହଣ କରୁଛନ୍ତି, କରୁଥିଲେ ଓ କରୁଥିବେ ।

ଯୁଗଜନ୍ମା ଜଗନ୍ନାଥ ଦାସ ସତ୍ୟଯୁଗରେ ଗାର୍ଗବ ମହର୍ଷି, ତ୍ରେତାଯୁଗରେ ସୁଷେଣ, ଦ୍ୱାପର ଯୁଗରେ ସୁଦାମ ଓ କଳିରେ ଜଗନ୍ନାଥ ଦାସ ରୂପେ ଜନ୍ମ ଲାଭ କରିଛନ୍ତି । ଏହି ଚତୁର୍ବିଧ ଯୁଗପୂର୍ବରୁ ମଧ୍ୟ ସେ ବସୁଦାମ ରୂପରେ ନିତ୍ୟ ଗୋଲୋକ ଧାମରେ ରାସ କୀର୍ତ୍ତନ କରୁଥିଲେ । ଅଚ୍ୟୁତାନନ୍ଦକୃତ ଗୋପାଳ ଓଗାଳରେ କଥିତ ଅଛି ଯେ —

ଅନନ୍ତ ଯୁଗ ଯେ ଭାଇ ଆଦ୍ୟରେ ହୋଇଲା
କୃଷ୍ଣ କଳ୍ପନାରୁ ପୁଣି ଆମ୍ଭ ଜନ୍ମ ହେଲା
ରାଧା କୃଷ୍ଣଙ୍କର ଲୀଳା ପ୍ରକାଶିବା ପାଇଁ
ଜନମ ହୋଇଲୁ ଆମ୍ଭେ ପଞ୍ଚସଖା ତହିଁ ।

(ଅଚ୍ୟୁତ-ଗୋପାଳ ଓଗାଳ)

ପଞ୍ଚସଖାମାନେ ରାଧାକୃଷ୍ଣ ଲୀଳା ପ୍ରକଟ କରିବାକୁ ଭଗବାନଙ୍କ ଆଦିଷ୍ଟ କର୍ତ୍ତୃକ ଜନ୍ମ ଗ୍ରହଣ କରିଥିଲେ ଜଗନ୍ନାଥ ଦେଶରେ । ସତ୍ୟ ତ୍ରେତୟା ଦ୍ୱାପର କଳି ଏବଂ ଅନନ୍ତ ଯୁଗରେ ମଧ୍ୟ ପଞ୍ଚସଖାମାନେ ଜନ୍ମ ପରିଗ୍ରହଣ କରନ୍ତି । ଅନନ୍ତ ଯୁଗରେ କଣ ଏମାନଙ୍କ ନାମ ଥିଲା ତାହା ମଧ୍ୟ ଦର୍ଶାଯାଇଛି ଯଥା —

ଶ୍ରୀଦାମ ସୁଦାମ ଆଉ ବସୁଦାମନନ୍ଦ
ନିତ୍ୟ ଗୋଲୋକରେ ଆମ୍ଭ ନାମ ଯେ ସୁନନ୍ଦ

X X X

ଅନନ୍ତ ଯୁଗଟି ଶୁଣ ଭାଇ ଯେ ଗୋପାଳ
ପଞ୍ଚସଖା ତହିଁ ପୁଣି ଗୋଲୋକରେ ମେଳ ।
ସତ୍ୟ ଯୁଗେ ଜାଣ ଭାଇ ବ୍ରାହ୍ମଣ ଅଟଇ
କ୍ଷତ୍ରିୟ ଜନମ ତ୍ରେତାଯୁଗକୁ ଯେ କହି
ଦ୍ୱାପର ଯୁଗଟି ଜାଣ ବୈଶ୍ୟ ବର୍ଣ୍ଣ କହି
କଳି ଯୁଗ ଗୋଟି ଜାଣ ଶୂଦ୍ରବର୍ଣ୍ଣ ହୋଇ

X X X

ଅନନ୍ତ ଅଚ୍ୟୁତ ନାମ କହିଲୁ ଯେ ପୁଣି
ଜଗନ୍ନାଥ ଯଶୋବନ୍ତ ବଳରାମ ଘେନି ।

(ଗୋପାଳ ଓଗାଳ—ଅଚ୍ୟୁତାନନ୍ଦ)

କେବଳ ଅଚ୍ୟୁତାନନ୍ଦଙ୍କ ବ୍ରହ୍ମସଂହିତା, ଶୂନ୍ୟସଂହିତା, ଜନମଲୀଳା, ଅବତାରମାଳିକା ଉଦୟ କାହାଣୀ ଗୁପ୍ତ ଭବିଷ୍ୟନ୍ତ ମାଳିକ, ମଣିବନ୍ଧ ଗୀତା, ମଣିବରଣ ଗୀତା, ବଟସଂହିତା, ପଞ୍ଚସଖା ଜନ୍ମ ପ୍ରଭୃତି ଗ୍ରନ୍ଥ ନିଚୟରେ ଏହି ପଞ୍ଚସଖା ପ୍ରସଙ୍ଗ ନାମଧାମ ଗୁରୁ ପ୍ରଣାଳୀ ପ୍ରଭୃତି ଉଲ୍ଲେଖ ରହିଛି । ପଞ୍ଚସଖାମାନେ ଯୁଧିଷ୍ଠିରାଦି ପଞ୍ଚଭ୍ରାତା ମଧ୍ୟ ଥିଲେ ବୋଲି ଶୂନ୍ୟ ସଂହିତା ଗ୍ରନ୍ଥରେ ଉଲ୍ଲେଖ ରହିଛି ।

କେତେକ ଗବେଷକ ଜଗନ୍ନାଥ ଦାସଙ୍କ ସହିତ ଓ ପଞ୍ଚ ସଖାଙ୍କ ସହ ଚୈତନ୍ୟଙ୍କର କୌଣସି ସମ୍ବନ୍ଧ ନାହିଁ ବୋଲି ଏଣୁତେଣୁ ଲେଖି ବାହାସ୍ଫୋଟ ମାରିବାରେ ନିଜକୁ ଲଜ୍ଜିତ ମନେ କରୁନାହାନ୍ତି; ମିଥ୍ୟା ଆସ୍ଫାଳନ କରିବାରେ ସେମାନେ ଅଭ୍ୟସ୍ତ । ଏପରି ଉଦ୍ଭଟ ଗାଳ୍ପିକଙ୍କ ସହ ବିବାଦୀୟ ମନୋଭାବ ନରଖି ସେମାନଙ୍କ ଉଦ୍ଦେଶ୍ୟରେ ଗୋଟିଏ କଥା କହିଲେ ଯଥେଷ୍ଟ ହେବ । ପଲ୍ଲୀକବି ନନ୍ଦକିଶୋରଙ୍କ ଭାଷାରେ —

ଗ୍ରନ୍ଥକାରଠାରୁ ସଦା ବଡ଼ ଆଲୋଚକ
ଦୁର୍ଲ୍ଲଭମାତ୍ରକ ଦେଶେ ଗ୍ରନ୍ଥର ପାଠକ;
କରିବାକୁ ଗ୍ରନ୍ଥକାର ସ୍ଥାନନିରୂପଣ
ସମସ୍ତ ଗ୍ରନ୍ଥ ତାହାର କର ଅଧ୍ୟୟନ ।

ଅତଏବ ଅଯଥା ମିଥ୍ୟା ସମାଲୋଚନା କରିବା ପୂର୍ବରୁ ନିଜକୁ ନିଜେ ଚିନ୍ତା କରିବା ଆବଶ୍ୟକ ଯେ ବାସ୍ତବରେ ଯଦୀୟ ବିଷୟରେ ଲେଖନୀଚାଳନା କରୁଛି, ତଦୀୟ ଗ୍ରନ୍ଥ କେତେ ପରିମାଣରେ ଅଧ୍ୟୟନ କରିଛି ? ତାହା ନ କରି

ଅଯଥା ଏଣୁ ତେଣୁ ଲେଖିକରି ଭ୍ରାନ୍ତ ମନୋଭାବର ପରିଚୟ ଦେଇ ଦେଶବାସୀଙ୍କୁ ପ୍ରତାରିତ କରିବା ସମୁଚିତ ନୁହେଁ । କୌଣସି ପ୍ରକାଶିତ ଗ୍ରନ୍ଥକୁ ଆଧାର ନ କରି ପ୍ରାଚୀନ ବିକଳାଙ୍ଗ ତାଳପତ୍ର ପୋଥି ଉପରେ ଆଧାରିତ । ଏହି ପ୍ରବନ୍ଧରେ ଜଗନ୍ନାଥ ଦାସ ପ୍ରସଙ୍ଗ ଉଲ୍ଲେଖ କରିବାର ପ୍ରୟାସ କରୁଛି । କେବଳ ଅଚ୍ୟୁତାନନ୍ଦ ପୋଥିରୁ ଯେ ପଞ୍ଚସଖା ପ୍ରସଙ୍ଗ ଉପଲବ୍ଧ ହେଉଛି ତା'ନୁହେଁ ଯଶୋବନ୍ତ ଅନନ୍ତ, ବଳବନ୍ତ ଓ ଜଗନ୍ନାଥ ଦାସ ତଥା ତଦୀୟ ଶିଷ୍ୟବର୍ଗ ଲିଖିତ ଗ୍ରନ୍ଥ-ଗୁଡ଼ିକରେ ମଧ୍ୟ ପଞ୍ଚସଖା ପ୍ରସଙ୍ଗମାନ ଉଲ୍ଲେଖ ରହିଛି । ଯଥା :—

ସତ୍ୟ ଯୁଗରେ—କୃପାଜଳେ ନାରଦଶ୍ଚ ମାର୍କଣ୍ଡ ଗର୍ଗବସ୍ତଥା
ବ୍ରହ୍ମାଦି ପଞ୍ଚଶାଖାଚ ଅବତାରଂ ପୁନଃ ପୁନଃ

(ଅଚ୍ୟୁତାନନ୍ଦ — ଶୂନ୍ୟସଂହିତା)

ଶିଷ୍ୟଙ୍କ ବଚନେ ଗୁରୁ କହନ୍ତି ଏ ପଞ୍ଚଶାଖା ଜନମ ହୁଅନ୍ତି
ସତ୍ୟରେ ନର ନାରାୟଣ ଋଷି ତପଃ ସାଧିଲେ ହୋଇଣ ତପସ୍ୱୀ
ଏ ପଞ୍ଚ ମହନ୍ତ ଋଷିକୁଳରେ ଜନମ ହୋଇଲେ ଋଷିଙ୍କ ଘରେ
ଅଗସ୍ତି ଅଙ୍ଗିର ମାର୍କଣ୍ଡ ମୁନି ବାଲ୍ମିକ ପରାଶର ଏ ଚିହ୍ନି

(ଜଗନ୍ନାଥ ଦାସ ଶିଷ୍ୟ ଜଗନ୍ନାଥ 'ପାଦପଦ୍ମ ସୁଧାନିଧି')

ତ୍ରେତୟାରେ—ତ୍ରେତାୟାଂ ରମନମଶ୍ଚ ସଖା ସଙ୍ଗେ ପ୍ରବେଶିତାଃ
ସୁଷେଣ ଜାମ୍ବବ ଶ୍ଚୈବ ନଳ ନୀଳୌ ତଥୈବଚ
ହନୁମାନ୍ ପଞ୍ଚଶ ଖେବ ଅବତାରଂ ପୁନଃ ପୁନଃ ।
—ଅଚ୍ୟୁତାନନ୍ଦ

ଦ୍ୱାପରରେ—ଦ୍ୱାପରେ କୃଷ୍ଣ ଅବତାର ହେଲେ ଗୋପେ ଗୋପାଳଙ୍କ ସଙ୍ଗେ ବଢ଼ିଲେ
ସଖା ପଞ୍ଚ ଜଣ ସଙ୍ଗତେ ଏହି ସୁଦାମ ସୁବଳ ସୁବାହୁ ହୋଇ
ଦାମ ସ୍ତୋକ କୃଷ୍ଣ ଏ ପଞ୍ଚଜଣ—ଗୋପାଳ ମନ୍ତ୍ର ଏ ଯୁଗେ ଭଜନ

(ଜଗନ୍ନାଥ ଦାସ—'ପାଦପଦ୍ମ ସୁଧାନିଧି')

ଦ୍ୱାପରେ ସୁବାହୁ ସୁବଳ ଶ୍ରୀବତ୍ସ ନାମେଣ ଗୋପାଳ । ୧୭୮
ଦାମ ସୁଦାମ ଆଦିକରି ଏ ପଞ୍ଚ ଗୋପାଳ ଯେ ସରି । ୧୭୯
ପ୍ରଭୁଙ୍କ ସଙ୍ଗେ ଜନ୍ମ ହେଲେ ପଞ୍ଚସଖା ନାମ ବହିଲେ । ୧୮୦
ପାଞ୍ଚ ହେଁ କୃଷ୍ଣ ମନ୍ତ୍ରୁ ଜାତ ଭକତ ଶ୍ରେଷ୍ଠଙ୍କ ମହତ । ୧୮୧

('ଚଉରାଶି ଆଜ୍ଞା'—ଯଶୋବନ୍ତ ଦାସ)

ଦ୍ୱାପରେ କୃଷ୍ଣ ଜନ୍ମସ୍ୟ ସଖା ସଙ୍ଗେ ପ୍ରବେଶିତାଃ
ଦାମ ସୁଦାମକଂ ଚୈବ ସୁବାହୁ ସୁବଳ ସ୍ତଥା
ଶ୍ରୀବିତ୍ସଃ ପଞ୍ଚ ଶାଖେୟଂ ଅବତାରଂ ପୁନଃ ପୁନଃ

(ଅଚ୍ୟୁତା ନନ୍ଦ)

କଳିରେ—କଳୌରୂପଧରଂ ପଞ୍ଚ ସଖା ସଙ୍ଗ ପ୍ରବେଷିତା
ଅନନ୍ତ ଅଚ୍ୟୁତ ଶ୍ଚୈବ ଯଶୋବନ୍ତ ବଳରାମକଂ
ଜଗନ୍ନାଥ ପଞ୍ଚ ଶାଖା ଅବତାରଂ ପୁନଃ ପୁନଃ

(ଅଚ୍ୟୁତାନନ୍ଦ)

କଳି ଯୁଗରେ ଭଜନସ୍ୱରୂପ    ଚୈତନ୍ୟ ଗୌରାଙ୍ଗ ଶଚୀଙ୍କସୁତ
ସେକାଳେ ପାଞ୍ଚ ମହନ୍ତ ଜନମ    ଅନନ୍ତ ଅଚ୍ୟୁତ ଯଶୋବନ୍ତ ଧନ୍ୟ
ଶ୍ରୀଜଗନ୍ନାଥ ବଳରାମ ଦାସ    ବ୍ରଜ ଅନିରୁଦ୍ଧ ନିରୁଦ୍ଧ ସୁତ
କାମ ବୀଜ ହରେ ନାମ ଭଜନ    ପରମ ହଂସ ଲୟ ଯୋଗ ସାଧନ ।

(ଜଗନ୍ନାଥ ଦାସ ଶିଷ୍ୟ ଜଗନ୍ନାଥ—'ପାଦପଦ୍ମ ସୁଧାନିଧିଃ')

କଳି ଶେଷ ଭାଗରେ ଅଚ୍ୟୁତାନନ୍ଦଙ୍କ ପରି ଜଗନ୍ନାଥ ଦାସ ନିଜ ଶିଷ୍ୟଙ୍କୁ ମଧ୍ୟ ମନ୍ତ୍ରସାଧନ ପ୍ରଭୃତି କଣ ହେବ ତାର ସୂଚନା ପାଦପଦ୍ମ ସୁଧାନିଧିରେ ଦେଇଛନ୍ତି ଯଥା —

ପୁଣି ଏହି କଳିଯୁଗ ଅନ୍ତରେ    କଳଙ୍କୀ ଅବତାର ହେବା କାଳେ
ଏ ପଞ୍ଚ ମହନ୍ତ ହେବେ ଜନମ    ଦାଶରଥି ଶ୍ୟାମ ଅନନ୍ତ ଚିହ୍ନ
ଦୀନବନ୍ଧୁ କୃପାସିନ୍ଧୁ ଏପରି    ପରମହଂସ ଧ୍ୟାନ ନୀଳଗିରି
ସହଜ ସମାଧି ଲୟ ମୂର୍ଦ୍ଧନି    ବ୍ରହ୍ମ ଗାୟତ୍ରୀ ପଞ୍ଚବୀଜ ଘେନି
ବ୍ରହ୍ମ ଏକାକ୍ଷର ଭଜନ ଚାଣ    ବଜ୍ର କ୍ଳୀଂ ବୀଜ କରି ଭଜନ ।

(ପାଦପଦ୍ମ ସୁଧାନିଧିଃ) ୮୧-୮୬

୮୪ ଅଙ୍ଗରେ ଯଶୋବନ୍ତ କହିଛନ୍ତି :—

ନାମ :— ଏ ପଞ୍ଚ ଶାଖା ନାମ ଯହା    । କହିବା ଶୁଣ ରଘୁ ନାହା ॥
ଜଗନ୍ନାଥ ଯେ ବଳରାମ    । ଶିଷ୍ଟ ଯଶୋବନ୍ତ ବୋଲିଣ ॥
ଅଚ୍ୟୁତାନନ୍ଦ ପଞ୍ଚ ହୋଇ    । ଏ ପାଞ୍ଚ ନାମ ଦେଲି କହି ॥

ଜାତି :— ଦାସ ଜଗନ୍ନାଥଟି ପୁଣ    । ବ୍ରାହ୍ମଣ କୁଳେ ହୋଇ ଜନ୍ମ ॥
କ୍ଷେତ୍ର ଦକ୍ଷିଣେ ତାର ଘର    । ଭକତ ଜନଙ୍କ ଶିଖର ॥
ବଳରାମ ଦାସଙ୍କ ଜନ୍ମ    । ଶୂଦ୍ର କୁଳରେ ଉତପନ୍ନ ॥
ନୀଳଗିରି ଉତ୍ତର ତଟ    । ରହି ଅଛନ୍ତି କରି ମଠ ॥
ସୂର୍ଯ୍ୟ କୁଳରେ ଉତପନ୍ନ    । ଅନନ୍ତ ଶିଶୁ ବୋଲି ନାମ ॥
ବାଲି ପଡ଼ାରେ ଘର କରି    । ଅଛନ୍ତି ଯେ ସ୍ଥାନ ଆବୋରି ॥
ମୁଁ ଯଶୋବନ୍ତ କ୍ଷତ୍ରୀକୁଳେ    । ଜନମ ହୋଇଅଛି ଭଲେ ॥
ଅଡ଼ଙ୍ଗଗଡ଼ ପଶ୍ଚିମରେ    । ପଶ୍ଚିମେଶ୍ୱରଙ୍କ ପଛରେ ॥
ନନ୍ଦିଗ୍ରାମ ପଛରେ ମଠ    । ପାଇଲି ବହୁତ ସଙ୍କଟ ॥
ଅଗ୍ରୋ କୁଳେ ଅଚ୍ୟୁତ ପୁଣ    । ମାଠ ଚିତ୍ରୋପଳା କୂଳେଣ ॥
ଏମନ୍ତେ ହୋଇ ପଣ୍ଡିତ    । ଥିଲୁ ଯେ ଯାହାର ସଙ୍ଗତ ॥
ଏବେ ଶ୍ରୀକୃଷ୍ଣ ଆଜ୍ଞାକଲେ    । ମହିମା ପ୍ରକାଶ ବୋଇଲେ । ॥

('ଚଉରଶି ଅଙ୍ଗ'—ଯଶୋବନ୍ତ)

ପଞ୍ଚ ସଖାମାନେ ଭଗବନ୍ନାମର ମହିମା ପ୍ରଚାର କରିବା ଉଦ୍ଦେଶ୍ୟରେ ଏହି ଧରାଧାମରେ ଜନ୍ମ ପରିଗ୍ରହଣ କରିଥିଲେ । ଏମାନେ ଜଗନ୍ନାଥଙ୍କ ମୁଖ ଚକ୍ଷୁ ନାସା କର୍ଣ୍ଣ ଓ ହୃଦୟରୁ ସମ୍ଭୂତ ବୋଲି ଉଲ୍ଲେଖ କରିଛନ୍ତି । ଜଗନ୍ନାଥ ମହାପ୍ରଭୁଙ୍କ

ମୁଖ ଚକ୍ଷୁ ପ୍ରଭୃତି ପଞ୍ଚାଙ୍ଗରୁ ଏମନେ ଜନ୍ମ ହେବାରୁ ପଞ୍ଚଶାଖା ନାମରେ ନାମିତ ହୁଅନ୍ତି । 'ଜନ୍ମବୋଲି' ପୋଥିରେ ଯଶୋବନ୍ତ ଦାସ ଲେଖିଛନ୍ତି କୋଉ ଶାଖା କିଏ—

ଶାଖା :—ଅଚ୍ୟୁତ ଦାସ ଶାଖାଟି ଅଟଇ ସୁଦାମା ଶାଖା ଜଗନ୍ନାଥ ହୋଇ ।
ସୁବଳ ଶାଖା ବଳରାମ ହୋଇ ସୁବାହୁ ଶାଖା ଯଶୋବନ୍ତ ହୋଇ
ଶ୍ରୀବତ୍ସ ଶାଖା ଅନନ୍ତକୁ ଜାଣ ଏକଥା ପ୍ରତ୍ୟକ୍ଷେ ହେତୁରେଣ

କୁଳଜନ୍ମ :—ସୂର୍ଯ୍ୟ କୁଳେ ଶିଶୁ ହୋଏ ଜନମ । ଶୁଦ୍ର କୁଳେ ବଳରାମଟି ପୁଣ ।।
କ୍ଷତ୍ରୀ କୁଳେ ଯଶୋବନ୍ତକୁ ଜାଣ । ଅହୋ କୁଳେ ମୋକ୍ଷ ଅଚ୍ୟୁତ ଜାଣ ।।
ବ୍ରହ୍ମ କୁଳରେ ଦାସ ଜଗନ୍ନାଥ । ଏକଥା ନିଶ୍ଚୟେ ଅଟଇ ସତ୍ୟ ।
(ଜନ୍ମବୋଲି—ଯଶୋବନ୍ତ)

ଏହି ଉପରୋକ୍ତ ବଚନରୁ ଜଣାଯାଏ ଯେ, ସୂର୍ଯ୍ୟକୁଳରେ ଶିଶୁ ଅନନ୍ତ, ଶୁଦ୍ର କୁଳେ ବଳରାମ, କ୍ଷତ୍ରୀ କୁଳେ ଯଶୋବନ୍ତ, ଅହୋକୁଳେ (କରଣ) ଅଚ୍ୟୁତ, ବ୍ରାହ୍ମଣ କୁଳରେ ଦାସ ଜଗନ୍ନାଥ ଜନ୍ମ ଗ୍ରହଣ କରିଥିଲେ ।

ଅନନ୍ତ ଦାସଙ୍କ 'ଶିଶୁ ବେଦଟୀକା' ବଳରାମ ଦାସଙ୍କ 'ଛତିଶଗୁପ୍ତ ଗୀତା'ରେ ଏହି ପଞ୍ଚସଖା ପ୍ରସଙ୍ଗ ଉପରୋକ୍ତ ମତରେ କଥିତ ଅଛି । ଅନେକ ବୋଲିରେ ମଧ୍ୟ ପଞ୍ଚସଖା ପ୍ରସଙ୍ଗର ଉଲ୍ଲେଖ ରହିଛି । ପ୍ରବନ୍ଧ କଳେବର ବୃଦ୍ଧି ଭୟରେ ସେସବୁ ଦେବା ସମ୍ଭବ ହେଉନାହିଁ ।

କେବଳ ପଞ୍ଚସଖା ଉଦ୍ଦେଶ୍ୟରେ ଜଗନ୍ନାଥ ଦାସଙ୍କ ମତ ଉଦ୍ଧାର କରୁଛୁ :— ମହାପୁରୁଷ ଜଗନ୍ନାଥ ଦାସ ସ୍ୱରଚିତ 'ପଦ୍ମବନ ବର୍ଣ୍ଣନା' ନାମକ କ୍ଷୁଦ୍ର ପୁସ୍ତିକାରେ ପଞ୍ଚସଖା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି :—

ମହାଶକ୍ତି ପଶ୍ଚିମରେ ବଟପିପ୍ପଳକୁ ଘେନି ସଙ୍ଗରେ ସଜନି ଗୋ
ଅନନ୍ତ ଶିଶୁ ସେଠାରେ ସଜନି ଗୋ । ୧୧ ।
ଶ୍ରୀଶକ୍ତି ରହେ ଉତ୍ତରେ ଶ୍ରୀମତି ଜୟା ବିଜୟ ସଙ୍ଗରେ ସଜନି ଗୋ
ଯଶୋବନ୍ତଟି ସେଠାରେ ସଜନି ଗୋ । ୧୪ ।
ସଖା ବଳରାମ ଭାବ ପୂର୍ବବଟ ତହିଁ ତାଙ୍କୁ ଦୁର୍ଲ୍ଲଭ ସଜନି ଗୋ
ତାରେଣୀ ଶକ୍ତିଟି ନବ ସଜନି ଗୋ । ୨୨
ଜଗନ୍ନାଥ ଦାସ ମୁହିଁ ଦକ୍ଷିଣବଟରେ ଆଶ୍ରିତ ରହି ସଜନି ଗୋ । ୨୬ ।
ଦେଖ ଲୀଳାରସ ତହିଁ ସଜନି ଗୋ । ୨୭ ।
ତାଙ୍କ ଆଗେ କଳ୍ପବଟ ସେହି ବଟମୂଳେ ମଣି ମଣ୍ଡପ ସଜନି ଗୋ
ଅଚ୍ୟୁତାନନ୍ଦ ଆଶ୍ରିତ ସଜନି ଗୋ । ୨୭ ।
ଅଣାକ୍ଷର ଚିତ୍ର ଏହି ତ୍ରୟ ବିନ୍ଦୁ ପରେ ସେ ଭାବଗ୍ରାହୀ ସଜନି ଗୋ
ଦାସ ଜଗନ୍ନାଥ କହି ସଜନି ଗୋ । ୪୨ ।
ଇତି ଶ୍ରୀ ବ୍ରହ୍ମ ଏକାକ୍ଷର ଗୀତାୟାଂ ପଦ୍ମବନ ରସ ବର୍ଣ୍ଣନେ ବ୍ରହ୍ମଏକାକ୍ଷର ନାମ ତତ୍ତ୍ୱ କଥନେ ଚତୁର୍ଥୋଽଧ୍ୟାୟଃ ।

---

ଯଦି କେହି ପଞ୍ଚସଖା ପ୍ରସଙ୍ଗ ଦେଖିବାକୁ ଇଚ୍ଛୁକ ହେବେ ଆମ୍ଭ ନିକଟରେ ସେ ସବୁ ସଂଗୃହୀତ ଅଛି ବୁଝିନେବେ ।

ଜଗନ୍ନାଥ ଦାସ 'ପାଦପଦ୍ମ ସୁଧାନିଧି'ରେ ପଞ୍ଚସଖା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି ଯେ :—

ଗୁପତେ ସାଧନା କର ପାଇବ କୃଷ୍ଣ ପୟର
ଶୁଧା ଭଜନରେ ଯେ ପାଇବ ମୁକତି
ପଞ୍ଚତତ୍ତ୍ୱ ଜାଣିଥିବ ତାକୁ ବୋଲି ସୁ ବୈଷ୍ଣବ
ତାହାଙ୍କ ଚରଣେ ଦଣ୍ଡବତ କରିଚି

ପଞ୍ଚସଖା ଘରେ ଧ୍ୟାନ ପଞ୍ଚାମୃତ କରେ ଭଜନ
ଅନନ୍ତ ଅଚ୍ୟୁତ ଯଶୋବନ୍ତ ବିଚାରି
ଜଗନ୍ନାଥ ଦାସ ପଦ ଅତି ବଡ ନାମ ଭେଦ
ଆଉ ଯେତେ ବ୍ରଜବାସୀ ନୁହନ୍ତି ସରି ।

('ପାଦପଦ୍ମ ସୁଧାନିଧି' ପ୍ରଥମ ଅଧ୍ୟାୟ ୫୬ ପଦ ଜଗନ୍ନାଥ ଦାସ)

ଉପରୋକ୍ତ ଉକ୍ତିମାନଙ୍କରୁ ଜଣାଯାଏ ଯେ, ପଞ୍ଚସଖା ଜଗନ୍ନାଥ ବଳବନ୍ତ ଯଶୋବନ୍ତ ଅନନ୍ତ ଅଚ୍ୟୁତି ପ୍ରଭୃତି ଏ ଦେଶରେ ଭକ୍ତିଭାବନା ନାମ ପ୍ରଚାର, ତତ୍ତ୍ୱ ବିଚାର, ଗୁରୁ ଶିଷ୍ୟ ପରଂପରା, ମଠ ମନ୍ଦିର ପ୍ରତିଷ୍ଠା ଯଜ୍ଞାଦି ସନାତନ କ୍ରିୟା କଳାପର ପ୍ରଚାର କରିବା ନିମିତ୍ତ ଉତ୍କଳଧାମରେ ଜନ୍ମଗ୍ରହଣ କରି ବହୁକାଳ ଧର୍ମପ୍ରଚାର ପ୍ରସାର କରି ଏହି ଦେଶ ଓ ଜାତିର ଗୌରବକୁ ଚିର ସମୁଜ୍ଜ୍ୱଳ କରି ଯାଇଛନ୍ତି । ଅନ୍ୟ ଏକ ଗ୍ରନ୍ଥରେ ମିଳେ ଯେ ଜଗନ୍ନାଥ ବିଗ୍ରହର ପ୍ରତିମୂର୍ତ୍ତିସ୍ୱରୂପ "କଳ୍ପବୃକ୍ଷ"ର ପଞ୍ଚ ଶାଖାରୁ ଏମାନେ ଜନ୍ମ ହେତୁ ପଞ୍ଚଶାଖା ନାମକରଣ କରା-ଯାଇଛି । ଶାସ୍ତ୍ରକାରଙ୍କ ମତରେ କଥିତ ଅଛି ଯେ :—

ଅତ୍ୟାଗ ସହନୋବନ୍ଧୁଃ
ସଦୈବାନୁ ଗତଃ ସୁହୃତ୍
ଏକ କ୍ରିୟଂ ଭବେନ୍ମିତ୍ରଂ
ସମପ୍ରାଣଃ ସଖ୍ୟାସ୍ମୃତଃ

ଅର୍ଥାତ୍ ଯେଉଁ ବ୍ୟକ୍ତି ବନ୍ଧୁର ବିରହକୁ ସହିବାକୁ ଅକ୍ଷମ ହୁଏ ତାକୁ ବନ୍ଧୁ କହନ୍ତି । ମିତ୍ର କଥାକୁ ଯେ ଗୌରବାନ୍ୱିତ ମନେକରେ ଓ ଅନୁଗତ ହୋଇଥାଏ ତାର ନାମ ସୁହୃତ୍ । ନିଜର କ୍ରିୟା ଓ ମିତ୍ରର କ୍ରିୟା ଯଦି ସମାନ ହୁଏ ଅର୍ଥାତ୍ ମିତ୍ରର ଇଚ୍ଛା ଓ ନିଜର ଇଚ୍ଛାର ସାମ୍ୟତା ଥାଏ ତାର ନାମ ମିତ୍ର । ନିଜର ପ୍ରାଣ ଓ ଅନ୍ୟର ପ୍ରାଣ ଯଦି ଏକ ହୋଇଯାଏ ତାର ନାମ ସଖା ବୋଲି କଥିତ ଅଛି । ଅର୍ଥାତ୍ ବନ୍ଧୁଅପେକ୍ଷା ସୁହୃତ ଅତି ଆତ୍ମୀୟ, ସୁହୃତ୍ ଅପେକ୍ଷା ମିତ୍ର ଆତ୍ମୀୟତର ଏବଂ ବନ୍ଧୁ, ସୁହୃତ୍ ଓ ମିତ୍ର ଅପେକ୍ଷା 'ସଖା' ଆତ୍ମୀୟତମ । ଏକପ୍ରାଣ ବା ସମ-ପ୍ରାଣତାରେ ଥାଏ ସେମାନଙ୍କର ସାମ୍ୟତା । ଉତ୍କଳର ବରେଣ୍ୟ ପଞ୍ଚସଖା ଜଗନ୍ନାଥ ଯଶୋବନ୍ତ, ବଳବନ୍ତ, ଅନନ୍ତ, ଅଚ୍ୟୁତ ଏମାନେ ଥିଲେ 'ସଖା' ।

ଏହି ପଞ୍ଚ ସଖା ସର୍ବ ବିଷୟରେ ବିଜ୍ଞତାସିଦ୍ଧ ଲାଭ କରିଥିଲେ ମଧ୍ୟ ଉଜ୍ଜୟିନୀ ରାଜାଙ୍କର ନବରତ୍ନ ପରି ଏମାନେ ଏକ ଏକ ବିଷୟରେ ଚୂଡାନ୍ତ ନିଷ୍ପତ୍ତି କରୁଥିଲେ । ଭାବସିଦ୍ଧାନ୍ତରେ ଯଶୋବନ୍ତ, ଯନ୍ତ୍ରସିଦ୍ଧାନ୍ତରେ ଅନନ୍ତ; ଜ୍ଞାନ ସିଦ୍ଧାନ୍ତରେ ବଳବନ୍ତ, ଭକ୍ତିସିଦ୍ଧାନ୍ତରେ ଜଗନ୍ନାଥ ଓ ଅଗତ ଅନାଗତ ସିଦ୍ଧାନ୍ତରେ ଅଚ୍ୟୁତାନନ୍ଦ ଥିଲେ ଚୂଡାନ୍ତ; ଯଥା :—

ଅଗମ୍ୟ ଭାବ ଜାଣେ ଯଶୋବନ୍ତ ଗାର କଟା ଯନ୍ତ୍ର ଜାଣେ ଅନନ୍ତ ।
ଆଗତ ନାଗତ ଅଚ୍ୟୁତ ଭଣେ ବଳରାମ ଦାସ ତତ୍ତ୍ୱ ବଖାଣେ ।।
ଭକ୍ତିର ଭାବ ଜାଣେ ଜଗନ୍ନାଥ ପଞ୍ଚସଖା ଏ ଓଡ଼ିଶା ମହନ୍ତ ।।

ଏକ ଏକ ବିଷୟରେ ଏମାନେ ଥିଲେ ମହାନ୍ ସିଦ୍ଧବ୍ୟକ୍ତି ତେଣୁ ଏମାନଙ୍କୁ ଏ ଦେଶ ପଞ୍ଚ ମହନ୍ତ ଆଖ୍ୟା ଦେଇ ଗୌରବାନ୍ୱିତ କରିଅଛି । ଏହି ପଞ୍ଚସଖାଗଣ ଯନ୍ତ୍ର ମନ୍ତ୍ର ତନ୍ତ୍ର ଭାବ ମହାଭାବ ଭକ୍ତି ଆଗମ ନିଗମ ତତ୍ତ୍ୱସ୍ୟଙ୍କ ଅଭିମାନବ ଥିଲେ । ଏଥିମଧ୍ୟରୁ ଜଗନ୍ନାଥ ଦାସ ଭକ୍ତି ସିଦ୍ଧାନ୍ତର ଚୂଡାନ୍ତ ନିଷ୍ପତ୍ତିଦାତା ଥିଲେ ।

ଜନ୍ମ ପରିଚୟ (କ) ଜଗନ୍ନାଥ ଦାସଙ୍କ ଜନ୍ମ ପରିଚୟ ୨ ପ୍ରକାର ଉପଲବ୍ଧ ହୁଏ । ପ୍ରଥମଟି ହେଲା :—ଜଗନ୍ନାଥ ଦାସ, ଓଡ଼ିଆ ଭାଷାର ଜନ୍ମଦାତା, ପ୍ରତିଷ୍ଠାତା ଏବଂ ସୂର୍ଯ୍ୟବଂଶର ବରେଣ୍ୟ ସ୍ରଷ୍ଟା ବୀର ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳବର ବର୍ଗେଶ୍ୱର ବୀରାଧିବୀରବର ମହାରାଜା ପ୍ରତାପୀ କପିଳେନ୍ଦ୍ର ଦେବ ନାମରେ ନାମିତ କପିଳେନ୍ଦ୍ରପୁର ଶାସନରେ ୧୪୧୨ ଶକାବ୍ଦ ବା ୧୪୯୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଭଗବାନ ଦାସ ଏବଂ ମାତାଙ୍କ ନାମ ପଦ୍ମାବତୀ । ପିତା ଭଗବାନ ଦାସ ଜଗନ୍ନାଥ ପ୍ରଭୁଙ୍କର ପରମ ଭକ୍ତ ଓ ଅସାଧାରଣ ପଣ୍ଡିତ ଥିଲେ । ଶ୍ରୀମଦ୍ ଭାଗବତ ମହାପୁରାଣ ପାରାୟଣ ଥିଲା ତଦୀୟ କର୍ମ ପରିସରର ମୁଖ୍ୟ କର୍ମ । ପିତାମାତା ଦୁହେଁ ଆଜୀବନ ଜଗନ୍ନାଥ ଭକ୍ତ ଥିଲେ ମଧ୍ୟ ଜୀବନର ଅର୍ଦ୍ଧାଧିକ ବୟସରେ ଜଗନ୍ନାଥଙ୍କ କରୁଣା ବଶତଃ ବାଳକ ଜଗନ୍ନାଥ ଭକ୍ତିହୃଦୟା ପତିପ୍ରାଣା ପଦ୍ମାବତୀଙ୍କ ଗର୍ଭରୁ ଭାଦ୍ରବ ମାସ ଶୁକ୍ଳପକ୍ଷ ଅଷ୍ଟମୀ ବୁଧବାର ମଧ୍ୟାହ୍ନ ସମୟରେ ଭୂପୃଷ୍ଠରେ ଅବତରଣ କରିଥିଲେ । ସେଦିନ ପବିତ୍ର ରାଧାଷ୍ଟମୀ । ବୃଷଭାନୁ ନନ୍ଦିନୀ ଜନ୍ମୋତ୍ସବରେ ତାଙ୍କର ଜନ୍ମ ହେତୁ ସେ ରାଧିକାଂକ ଅଂଶାବତାର ବୋଲି ଲୋକେ କହୁଥିଲେ ।

ଜଗନ୍ନାଥ ଦାସଙ୍କ ପିତା ଭଗବାନ ଦାସ ସୁଲଳିତ କଣ୍ଠରେ ପୁରାଣ ବୋଲିବାର ପରିଚୟ ଲାଭକରି ତତ୍କାଳୀନ ରାଜା ପୁରୁଷୋତ୍ତମ ଦେବ ତାଙ୍କୁ ମନ୍ଦିରର ପୁରାଣ ପଣ୍ଡା ରୂପେ ନିଯୁକ୍ତ କରିଥିଲେ । ପିତାଙ୍କର ପୁରାଣପାଠ ଓ ବ୍ୟାଖ୍ୟା ଶୁଣି ପିଲାଟି ପିତାଙ୍କ ପାଖରେ ଅବସ୍ଥାନ କରୁ କରୁ ତା ହୃଦୟରେ ଭକ୍ତି ଭାବର ଅଭ୍ୟୁଦୟ ଘଟୁଥିଲା । ସେ ଭକ୍ତିରସରେ ଓତଃପ୍ରୋତ ହୋଇ ଯାଉଥିଲେ । ଜ୍ଞାନୀ ପିତା ନିଜେ ଶିଶୁଟିର ଉପନୟନାଦି କାର୍ଯ୍ୟ ସମ୍ପନ୍ନ କରାଇ ବ୍ରାହ୍ମଣୋଚିତ ଶିକ୍ଷା ଅର୍ଥାତ ବ୍ୟାକରଣ କୋଷାଦି ଅଧ୍ୟୟନ କରାଇବାକୁ ଲାଗିଲେ । ପିଲାଟିର ଅସାଧାରଣ ଧୀ-ଶକ୍ତି ଦେଖି ପିତାଙ୍କ ଆଖିରୁ ଲୋତକଧାର ବିଗଳିତ ହେଉଥିଲା । ସେ ଜଗନ୍ନାଥଙ୍କୁ ପ୍ରଣାମ କରି କାତର ନିବେଦନ କରୁଥିଲେ, "ପ୍ରଭୁହେ ତୁମ୍ଭେହିଁ ଭରସା" । ବାଳକ ଜଗନ୍ନାଥ ଗୁରୁ ପିତାଙ୍କଠାରୁ ସରଳ ସାବଲୀଳ ବଚନ ସହିତ ଶାସ୍ତ୍ରରେ ପ୍ରବେଶାଧିକାର ଲାଭକଲେ । ପିତାଙ୍କର ଏକମାତ୍ର ପୁତ୍ର ଜଗନ୍ନାଥାନୁଗ୍ରହଲବ୍ଧ ଶିଶୁର ନାମକରଣ ରଖିଲେ ଜଗନ୍ନାଥ । ପିତାମାତା ପୁତ୍ର ସଦ୍ୟୋଜାତ ଶରତ୍କାଳୀନ ରାକା ଚନ୍ଦ୍ରମାବଦନାରବିନ୍ଦ ଦର୍ଶନ କରି ପ୍ରମୁଦିତ ହେବାକୁ ଲାଗିଲେ । ଜଗନ୍ନାଥ ଜ୍ଞାନପଥରେ ଅଗ୍ରସର ହେଉଥାନ୍ତି । ସେ ଅଳ୍ପ ବୟସରେ ଯଜୁର୍ବେଦ, ସାମବେଦ କଣ୍ଠସ୍ଥ କରିସାରି ତା'ପରେ କଳାପବ୍ୟାକରଣ ଓ ବର୍ଦ୍ଧମାନ ବ୍ୟାକରଣକୁ ଜିହ୍ୱାଗ୍ରରେ ନର୍ତ୍ତନ କରାଉଥିଲେ । ତା'ପରେ ବେଦାଙ୍ଗ ପୁରାଣ ଏବଂ ନାନା ଧର୍ମଶାସ୍ତ୍ରମାନ ଅଧ୍ୟୟନ କରିସାରି ଶେଷରେ ମହାଭାରତ ରାମାୟଣ ଓ ଭାଗବତ ପଢିବାକୁ ଲାଗିଲେ । ଦିବାକର ଦାସ କୃତ ଜଗନ୍ନାଥ ଚରିତାମୃତରେ ଉଲ୍ଲେଖ ଅଛି—

"ଆଜ୍ଞା ପ୍ରମାଣେ ସେ ଅଇଲେ ଓଡ଼ିଶା ଖଣ୍ଡେ ଜନ୍ମହେଲେ ।
ନାମ କପିଳେଶ୍ୱର ପୁର ଶାସନ ମଧ୍ୟେ ତାଙ୍କ ଘର ।
ପୁରାଣ ପଣ୍ଡା ଭଗବାନ ପଦ୍ମା ବୋଲିଣ ପତ୍ନୀନାମ ।
ଯଜୁର୍ବେଦ ସାମ ବେଦକୁ କଣ୍ଠସ୍ଥ କଲେକ ତାହାକୁ ।
କଳାପୀ ବର୍ଦ୍ଧମାନ ଦୁଇ ରଖିଲେ ଜିହ୍ୱା-ଅଗ୍ରେ ନେଇ ।
ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ ଭାରତ ସମଗ୍ର ପଢ଼ିଲେ ।
ଶ୍ରୀ ରାମାୟଣ ଗ୍ରନ୍ଥ ସାଧି ଶ୍ରୀଭାଗବତେ ଦେଲେ ବୁଦ୍ଧି ।

(ଜଗନ୍ନାଥ ଚରିତାମୃତ)

ପିତାଙ୍କର ଉପଯୁକ୍ତ ପୁତ୍ର ବୋଲି ଜନସାଧାରଣରେ ପରିଚିତି ଲାଭ କରିସାରି ଜଗନ୍ନାଥ ଦାସ ଯୌବନରେ ପଦାର୍ପଣ କରିବାରୁ ପିତା ବିବାହ କରାଇବା ନିମିତ୍ତ ପ୍ରସ୍ତାବ କରିଥିଲେ । ମାତ୍ର ପିତୃଭକ୍ତ ଜଗନ୍ନାଥ ଏତେଶୀଘ୍ର ବିବାହ ହେବାକୁ ଆଗ୍ରହ ପ୍ରକାଶ କଲେ ନାହିଁ 'ଏବଂ' ବିବାହ ହେବେନାହିଁ ବୋଲି କହିଥିଲେ । ସର୍ବଦା ତାଙ୍କ ମନ ବିଦ୍ୟାସାଧନାରେ ଆସକ୍ତ ଥାଏ । ପିତା ଓ ସ୍ନେହମୟୀ ଜନନୀଙ୍କ ଆଦରରେ କୋଳରେ ରହି ପରମ ଆନନ୍ଦ ପାଉଥିଲେ । ମାତା ପିତା ପୁଅର କଥାରେ ବାରଣ କଲେନାହିଁ ; କିନ୍ତୁ ଜଗନ୍ନାଥ ଚଉଦ ପନ୍ଦର ବର୍ଷ ମଧ୍ୟରେ ମହାଭାରତ ରାମାୟଣ ରଚନା କରି ଶେଷରେ ଭାଗବତ ରଚନାରେ ମନୋପ୍ରାଣ ଢାଳିଦେଲେ । ତା'ପରେ ପିତାଙ୍କର ଅକାଳବିୟୋଗ ଘଟିବାରୁ ମନ୍ଦିରର ପୁରାଣପଣ୍ଡା ଦାୟିତ୍ୱ ତାଙ୍କୁ ବହନ କରିବାକୁ ପଡ଼ିଥିଲା । ସେ ପୁରାଣପଣ୍ଡା ଦାୟିତ୍ୱ ବହନ କରି ଅତ୍ୟନ୍ତ କୃତିତ୍ୱର ସହିତ ଭାଗବତ ବ୍ୟାଖ୍ୟା କରି ଜନ ସାଧାରଣଙ୍କର ଆଦରଣୀୟ ଓ ସମ୍ମାନଭାଜନ ହେଲେ ।

ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ ସମଗ୍ର ଭାରତ ରଚିଲେ ।
ଶ୍ରୀରାମାୟଣ ଗ୍ରନ୍ଥ ସାଧି ଶ୍ରୀଭାଗବତେ ଦେଲେ ବୁଦ୍ଧି ।
ଦ୍ୱାଦଶ ସ୍କନ୍ଧ ଭାଗବତ ଟୀକାଟୀପ୍ପଣୀ ହିଁ ବହୁତ ।
ହେଲା ଅଷ୍ଟାଦଶ ବରଷ ଏମନ ସାଧିଲେ ବିଶେଷ ।

(ଜଗନ୍ନାଥ ଚରିତାମୃତ—ଦିବାକର ଦାସ)

ଜନ୍ମ ପରିଚୟ (ଖ)—ମାତ୍ର ଅତ୍ୟନ୍ତ ସୁ ପ୍ରାଚୀନ ତାଳପତ୍ର ପୋଥି 'ପ୍ରେମସାର ତନ୍ତ୍ର' ନାମକ ଗ୍ରନ୍ଥରେ ଥିବା ଶେଷ ଭାଗ ଆଡକୁ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଏପରି ଉଲ୍ଲେଖ ଅଛି ଯେ,

"ଜଗନ୍ନାଥ ଦାସଦେବଂ ସାକ୍ଷାତ୍ ରାଧା ସମୁଦ୍ଭବମ୍"

( ପ୍ରେମସାର ତନ୍ତ୍ରମ୍ )

ତାଙ୍କ ଜନ୍ମ ସମ୍ବନ୍ଧରେ ଗଦ୍ୟରୂପରେ ମଧ୍ୟ ଉଲ୍ଲେଖ ଅଛି— ଯଥା :— "ଶ୍ରୀ ଅତିବଡୀ ଜଗନ୍ନାଥ ଦାସଙ୍କ ପିତାଙ୍କ ନାମ ଭଗବାନ, ମାତାଙ୍କ ନାମ କମଳା ଦେବୀ । ବିବାହ କରାଇଲେ ରାଜଗୁରୁ ବନମାଳୀ ଆଚାର୍ଯ୍ୟ, ହରିନାମ ଦେଲେ ମଣ୍ଡଳେଶ୍ୱର, ନାମ ଶ୍ରୀ ଅତିବଡୀ ଜଗନ୍ନାଥ ଦାସେ, ତାଙ୍କ ପ୍ରିୟାଙ୍କ ନାମ— କୃଷ୍ଣପ୍ରିୟା । ଜନ୍ମ—ଆଶ୍ରମ କ୍ଷେତ୍ର ଦକ୍ଷିଣ ଭାଗ ମଧ୍ୟଭାଗରେ । ଜନ୍ମ ହେଲେ ବୈଶାଖ ମାସ କୃଷ୍ଣ ପକ୍ଷ ଏକାଦଶୀ ଦିନ ।

ଅର୍ଥାତ୍ ପ୍ରେମସାର ତନ୍ତ୍ରାନୁସାରେ ଜଗନ୍ନାଥ ଦାସଙ୍କ ପିତାଙ୍କ ନାମ ଭଗବାନ ମାତାଙ୍କ ନାମ କମଳା ଦେବୀ । ବନମାଳୀ ରାଜଗୁରୁଙ୍କ ପ୍ରେରଣାରେ ସେ

କୃଷ୍ଣପ୍ରିୟା ନାମ୍ନୀ କନ୍ୟାଙ୍କ ପାଣିଗ୍ରହଣ କରିଥିଲେ । ତାଙ୍କର ମନ୍ତ୍ରୋପଦେଷ୍ଟା ହେଲେ ମଣ୍ଡ ବଳରମ ଦାସ । ତଦୀୟ ଜନ୍ମ ବୈଶାଖ ମାସ କୃଷ୍ଣପକ୍ଷ ଏକାଦଶୀ ଦିନ ହୋଇଥିଲା ।

ଜଗନ୍ନାଥ ଚରିତାମୃତ ଲେଖକ ଜଗନ୍ନାଥ ଦାସଙ୍କ ମାତାଙ୍କ ନାମ ପଦ୍ମାବତୀ ବୋଲି ଲେଖିଛନ୍ତି । ପ୍ରେମସ ର ତନ୍ତ୍ରରେ କମଳା ଦେବୀ ବୋଲି ଲେଖା ଅଛି । ଦିବାକର ଦାସ ବିବାହ ହେବାକୁ ଜଗନ୍ନାଥ ଦାସ ମନାକରିଥିଲେ ବୋଲି ଲେଖିଛନ୍ତି ଅଥଚ ପ୍ରେମସାର ତନ୍ତ୍ରରେ ବନମାଳୀ ରାଜଗୁରୁଙ୍କ ସହାୟତାରେ କୃଷ୍ଣପ୍ରିୟାଙ୍କୁ ବିବାହ କରିଥିଲେ ବୋଲି ଉଲ୍ଲେଖ ଅଛି ।

ଏହି କୃଷ୍ଣପ୍ରିୟା ନାମ୍ନୀ କନ୍ୟା କିଏ ଓ କାହାର କନ୍ୟା ଜାଣିବାର ଉପାୟ ନାହିଁ; କାରଣ 'ପ୍ରେମସାରତନ୍ତ୍ର' ନାମକ ଗ୍ରନ୍ଥଟି କୀଟଦ୍ରଂଷ୍ଟ ଓ ଅର୍ଦ୍ଧଖଣ୍ଡିତ ଅବସ୍ଥାରେ ଆମ୍ଭେ ପାଇଛୁ । ଗ୍ରନ୍ଥକାରର ନାମ ମଧ୍ୟ ସେଥିରେ ଉଲ୍ଲେଖ ନାହିଁ । ତେବେ ଚୈତନ୍ୟ କହୁଛନ୍ତି ଓ ସାର୍ବଭୌମ ଶୁଣୁଛନ୍ତି ଗ୍ରନ୍ଥାରମ୍ଭରୁ ସନ୍ଧ୍ୟା ତର୍ପଣ, ଗାୟତ୍ରୀ, ଅଙ୍ଗନ୍ୟାସ, କରନ୍ୟାସ, ଆସନଶୁଦ୍ଧି, ଭୂତଶୁଦ୍ଧି, ପ୍ରାଣାୟାମ, ମାତୃକା, ବହି ମାତୃକା, ଅନ୍ତ ମାତୃକା, ଗାୟତ୍ରୀ, ପୂଜା, ପ୍ରଣାଳୀ, ଉପାସନା, ମନ୍ତ୍ର, ଯନ୍ତ୍ରାଦି ବହୁ ବିଷୟ ଅଛି । ମୁଖ୍ୟତଃ ଉତ୍କଳୀୟ ପୂଜାପ୍ରକାର ବିଧି ବ୍ୟବସ୍ଥା ଅଛି । ଆଶ୍ଚର୍ଯ୍ୟର କଥା ପ୍ରେମ ସାଧନାରେ ଚୈତନ୍ୟଙ୍କ ଜ୍ଞାନ ବିଜ୍ଞାନ ଅନନ୍ୟ ଥିଲା ବୋଲି ଜଣାଯାଏ । ବିଶେଷତଃ ଜଗନ୍ନାଥ ତତ୍ତ୍ୱ ସହିତ ଏହାର ସମ୍ବନ୍ଧ ନିଗୂଢ଼ ଥିବା ଜଣାଯାଏ । ଏକପଦ୍ମ ସାଧନାଠାରୁ ଶତଦଳ ସାଧନ ଚକ୍ର ପର୍ଯ୍ୟନ୍ତ ବହୁ ମୂଲ୍ୟବାନ ତଥ୍ୟପୂର୍ଣ୍ଣ ଉତ୍କଳ ଜାତିର ଏ ଅମୂଲ୍ୟ ଗ୍ରନ୍ଥରତ୍ନ । ମାତ୍ର ଚିରଫଟା ଖଣ୍ଡିତ ଅବସ୍ଥାରେ ଥିବାରୁ ଗ୍ରନ୍ଥଟି ବିକଳାଙ୍ଗ ହୋଇଯାଇଛି । ମାତ୍ର ଅଚ୍ୟୁତାନନ୍ଦ ଗାଦୀର ଅଶୀତିପର ବୃଦ୍ଧ ଶ୍ରୀଯୁକ୍ତ ଗୋବିନ୍ଦ ବଲ୍ଲଭ ଗୋସ୍ୱାମୀ କହନ୍ତି ଯେ— ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଜଗନ୍ନାଥ ଦାସଙ୍କ ଶିଷ୍ୟ ଥିଲେ ।

ଜଗନ୍ନାଥ ଦାସ ଜଗନ୍ନାଥ ମନ୍ଦିରରେ ଭାଗବତ ପାରାୟଣ କରୁଥିବା ସମୟରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଯୁଗାବତାର ମହାପ୍ରଭୁ ଚୈତନ୍ୟ ପୁରୀକୁ ଶୁଭାଗମନ କରିଥିଲେ ଏବଂ ମନ୍ଦିର ମଧ୍ୟରେ ପାରାୟଣରତ ଜଗନ୍ନାଥଙ୍କୁ ଦେଖି ଓ ତଦୀୟ ବୁଦ୍ଧସ୍ତୁତି ବ୍ୟାଖ୍ୟା ପ୍ରସଙ୍ଗ ଶ୍ରବଣ କରି ଚୈତନ୍ୟ ଭାବ-ବିହ୍ୱଳ ହୋଇ ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କରିଥିଲେ ଏବଂ ନିଜ ଉତ୍ତରୀୟ ବସ୍ତ୍ର ଦାସଙ୍କ ମସ୍ତକରେ ବନ୍ଧନ କରି ଅତିବଡୀ ଜଗନ୍ନାଥ ଦାସ ନାମରେ ଆହ୍ୱାନ କଲେ । ମଣି କାଞ୍ଚନର ସଂଯୋଗରେ ଅପୂର୍ବଶ୍ରୀ ସୂଚକୀ ଭଳି ଜଗନ୍ନାଥ ଦାସଙ୍କ ଅତିବଡୀ ନାମକରଣ ଚିରସ୍ମାରକୀ ହୋଇଅଛି ଓ ତଦୀୟ ସଂପ୍ରଦାୟ ଅତିବଡୀ ନାମରେ ବିଖ୍ୟାତ ହୋଇ ରହିଛି ।

ଚୈତନ୍ୟ ଜଗନ୍ନାଥ ଦାସଙ୍କ ଗୃହକୁ ଯାଇ ସେଠାରେ ତାଙ୍କୁ ମହାମନ୍ତ୍ର ପ୍ରେମ ଦୀକ୍ଷାଦି ପ୍ରଦାନ କରିଥିଲେ ଓ ବହୁ ଗୋପନୀୟ ମନ୍ତ୍ରଯନ୍ତ୍ର ରହସ୍ୟମାନ ମଧ୍ୟ ବୁଝାଇଥିଲେ ।

"ଚୈତନ୍ୟ ରୂପରେ ଆମ୍ଭେ ଆସି ପୁଣି ଜଗମୋହନରେ ବସି
ମହାମନ୍ତ୍ରପୁଣ ବସାରେ ଦେଲୁଟି ଏଥେ ଏତେ ଗୁପ୍ତ ଅଛି ।"

ଚୈତନ୍ୟ ଶିଷ୍ୟୋପଶିଷ୍ୟ ସହିତ ଜଗନ୍ନାଥ ଦାସଙ୍କ ଗୃହରେ ଶ୍ରୀକୃଷ୍ଣ ବେଶ ପରିଧାନ କରଉଥିବାବେଳେ ଭାବତନ୍ମୟ ହୋଇ ଯାଇଥିଲେ ଏବଂ ପ୍ରଥମେ ଶ୍ରୀକୃଷ୍ଣ ମସ୍ତକରେ ମୁକୁଟ ପରିଧାନ କରଇ ପରେ ଚନ୍ଦ୍ରମାଳ ଦେଲାବେଳେ ମୁକୁଟ ଥିବାରୁ ଚନ୍ଦ୍ରମାଳ ଗଳାରେ ପ୍ରବେଶ କରିବା ଅସୁବିଧା ହେତୁ ପିନ୍ଧା ମୁକୁଟକୁ ବାହାର କରିବାକୁ ଉଦ୍ୟତ ହୁଅନ୍ତେ ଚୈତନ୍ୟଙ୍କୁ ଜଗନ୍ନାଥ ଦାସ କହିଲେ କଣ କରୁଛନ୍ତି ପ୍ରଭୁ । ଚୈତନ୍ୟ ଅଟକିଗଲେ ଓ ଚେତନା ଫେରିବା ପରେ ସଙ୍ଗେ ସଙ୍ଗେ ଉତ୍ତରୀୟ ପଟ୍ଟବସ୍ତ୍ର ବାହାର କରି ଜଗନ୍ନାଥଙ୍କ ମସ୍ତକରେ ବନ୍ଧନ କରିଥିଲେ । ତୁଣି ଥରେ ଅତିବଡ଼ୀ ଜଗନ୍ନାଥ ମୋର ଭୁଲ ହେଲା ବୋଲି କହିଥିଲେ—

ଅଟଣା ଶ୍ରୀଅଙ୍ଗୁ ପାଛୋଡ଼ି କଟାବସନ ଅଙ୍ଗୁ କାଢ଼ି ।
ଦାସଙ୍କ ଶିରେ ବାନ୍ଧିଦେଲେ ଅତିବଡ଼ୀ ବୋଲି ବୋଇଲେ ।

ଜଗନ୍ନାଥଙ୍କୁ ଅତିବଡ଼ୀ ଉପାଧି ଦେଇ ଗୌରବାନ୍ୱିତ କରିବା ପରେ ବଙ୍ଗୀୟ ବୈଷ୍ଣବମାନେ ଅତ୍ୟନ୍ତ ବିମର୍ଷ ହୋଇଥିଲେ ଓ ସେଥିପାଇଁ ଚୈତନ୍ୟ ବୈଷ୍ଣବ ସଂପ୍ରଦାୟ ଉତ୍କଳୀୟ ବୈଷ୍ଣବ ଓ ଗୌଡ଼ୀୟ ବୈଷ୍ଣବ ରୂପରେ ଦୁଇ ଭାଗରେ ବିଭକ୍ତ ହେଲା । ଜଗନ୍ନାଥ ଦାସଙ୍କ ସହିତ ଯେଉଁମାନେ ସମ୍ମିଳିତ ହେଲେ ସେମାନେ ଉତ୍କଳୀୟ ବୈଷ୍ଣବ ହେଲେ ଏବଂ ବଙ୍ଗୀୟ ଷଡ଼ଗୋସ୍ୱାମୀ ଦଳ ଗୌଡ଼ୀୟ-ବୈଷ୍ଣବରୂପେ ପ୍ରଖ୍ୟାତ ହେଲେ । ଏ ସମ୍ବନ୍ଧୀୟ ବହୁ ତଥ୍ୟ ପଞ୍ଚସଖା ସାହିତ୍ୟରେ ବ୍ୟାପକ ପରିମାଣରେ ଉପଲବ୍ଧ ହୁଏ । ବିଶେଷତଃ "ପାଦପଦ୍ମ ସୁଧାନିଧି" ନାମକ ଗ୍ରନ୍ଥ ଓ ଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଅଛି ତା ନୁହେଁ ପଞ୍ଚସଖାମାନଙ୍କ ବହୁ ଗ୍ରନ୍ଥରେ ଏ ରହସ୍ୟ ଉଲ୍ଲିଖିତ ଅଛି ।

ଉତ୍କଳୀ ବ୍ରାହ୍ମଣ ଆସିଲେ ତାହାଙ୍କୁ ଅତିବଡ଼ୀ ଦେଲେ ।
ସର୍ବ ବୈଷ୍ଣବେ ହେଲୁ ସାନ ତାହାଙ୍କ ଅତିବଡ଼ୀ ନାମ ।

ପଞ୍ଚସଖାମାନେ ଚୈତନ୍ୟ ଜଗନ୍ନାଥଙ୍କ ଗହଣରେ ସ୍ୱ ସ୍ୱ ପରିଚୟ ପାଇଥିଲେ ଚୈତନ୍ୟ ସେମାନଙ୍କୁ ପରିଚୟ କରାଇଦେବା ପରେ ସମସ୍ତେ ଏକମାତ୍ର କର୍ମ କରିବାକୁ ଆସିଥିବା ରହସ୍ୟ ଜାଣିପାରିଥିଲେ । ପ୍ରତ୍ୟେକ ସଖାଙ୍କର ପୂର୍ବଜନ୍ମର ରହସ୍ୟମାନ ଚୈତନ୍ୟଙ୍କ କରସ୍ପର୍ଶରେ ବିକଶିତ ହୋଇ ଯାଇଥିଲା । ତା'ପରେ ପଞ୍ଚ ସଖାମାନେ ସମସ୍ତେ ରାଜା ପ୍ରତାପରୁଦ୍ର ରାଜସଭାରେ ପରୀକ୍ଷା ଦେଇ ନିଜ ନିଜର ଅପରାଜେୟ ଆସନକୁ ସୁରକ୍ଷା କରି ରାଜା ଓ ରାଜପରିବାର ରାଜବଧୂ କନ୍ୟା ନାମଦୀକ୍ଷା ଦେଇଥିଲେ ଏବଂ ଗୁରୁସ୍ଥାନୀୟ ହୋଇଥିଲେ । ଜଗନ୍ନାଥ ଦାସଙ୍କୁ ରାଜା ବହୁବାର ପରୀକ୍ଷା କରିଥିଲେ ଏବଂ ସବୁ ପରୀକ୍ଷାରେ ସେ ବିସ୍ମୟ-ସାଗରରେ ନିମଜ୍ଜମାନ ହୋଇଥିଲେ ।

ପ୍ରାଚୀ ସମିତି ସଂଗୃହୀତ ମାଦଳାପାଞ୍ଜି ପଞ୍ଚସଖା ପ୍ରସଙ୍ଗରେ ନିମ୍ନ ପ୍ରକାରେ ଉଲ୍ଲେଖ କରିଛନ୍ତି ।

"ରାଜା ଶ୍ରୀନବରେ ବିଜେକରି ରହିଲେ । ଗଉଡ଼ଦେଶ ନଦୀୟା ନବଦ୍ୱୀପରୁ ସନ୍ୟାସ ଦୀକ୍ଷା କରି ଶ୍ରୀଚୈତନ୍ୟ ମହାପ୍ରଭୁ ଜଗନ୍ନାଥ ମହାପ୍ରଭୁଙ୍କୁ ଅବଲମ୍ବନ କରିବେ ବୋଲି ଆଇଲେ ରାଜାଙ୍କୁ ଷଡ଼ଭୁଜ ଦେଖାଇଲେ । ସେ

ସମୟେ ଅଚ୍ୟୁତାନନ୍ଦ ଗୋସ୍ୱାମୀ ଓ ଶିଶୁ ଅନନ୍ତ ଗୋସ୍ୱାମୀ ଥିଲେ । ଅତିବଡ଼ୀ ଜଗନ୍ନାଥ ଗୋସାଇଁ ଥିଲେ । ରଘୁନାଥ ଅରକ୍ଷିତ, ଭଣ୍ଡାରୀ ଗୋସ୍ୱାମୀ ଥିଲେ । ଏ ଗୋସେଇଁମାନେ ରଜାଙ୍କୁ ଭଗବନ୍ତ ଦୀକ୍ଷାରେ ଦୀକ୍ଷିତ କରାଇଲେ । ଏମନ୍ତେ ବଳୀରାମ ଦାସେ ଥିଲେ । ଏମନ୍ତେ ବଳରାମ ଦାସେ ଭଜନେ ଗଲେ । ଗନ୍ଧଷେ ଲଙ୍କା ଭଣ୍ଡାରୀ ଗୋସାଇଁ ଭଜନେ ଗଲେ । ଯଶୋବନ୍ତେ ଦାସେ ଭଜନେ ଦେଲେ । ଶ୍ରୀହସ୍ତୁ ବେତ ଅରକ୍ଷିତ ରଘୁଭଜନେ ଗଲେ । ଅମୃତ ଜଗନ୍ନାଥ ଦାସ ଭଜନେ ସ୍ୱୀଅଙ୍ଗ ହୋଇ—......ଧାନଙ୍କ ଅଲିଗଲା । ଶିଶୁ ଗୋସାଇଁଠାରେ ଜଗନ୍ନାଥ ଦାସ ବିବାଦେ ମିଶିଗଲେ । ଏ ମହାରାଜାଙ୍କ ସତର ଅଙ୍କରେ ଦକ୍ଷିଣ କଟକାଇ କଲେ ।

( ମାଦଳାପାଞ୍ଜି ପ୍ରାଚୀ ସମିତି ପୃ ୪୪—୫୫ )

ଏଣୁ ଜଣାଯାଏ ଯେ ପ୍ରତାପରୁଦ୍ରଙ୍କ ସତର ଅଙ୍କରେ ପଞ୍ଚସଖା ଚୈତନ୍ୟ ଓ ରାଜା ପ୍ରତାପରୁଦ୍ର ଦେବଙ୍କର ପରୀକ୍ଷାଦି ସମସ୍ତ ବିଷୟର ସମାଧାନ ସରିଥିଲା । ସମସ୍ତେ ଏକମାତ୍ର ଜଗନ୍ନାଥ ଧର୍ମମତବାଦର ସ୍ରୋତରେ ଭାସମାନ ହେଉଥିଲେ । ଚୈତନ୍ୟଙ୍କ ନିର୍ଦ୍ଦେଶରେ ଏମାନେ ନାନା ଗ୍ରନ୍ଥ ଲେଖିବାରେ ବ୍ୟାପୃତ ରହୁଥିଲେ । ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ ଲେଖିଛନ୍ତି—

ଏମନ୍ତେ କିଛିଦିନ ତହିଁ ବସିଲି ସାଧୁଙ୍କ ମେଳରେ ବସି
ଅନନ୍ତ ଯେ ଯଶୋବନ୍ତ ବଳରାମ ଶ୍ରୀବତ୍ସ ମିଳିଲେ ଆସି
ଜଗନ୍ନାଥ ଦାସ ଘେନି ପଞ୍ଚସଖା ଉଦୟ ହୋଇଲେ ତହିଁ
ଘରେ ଘରେ ହରି ଧ୍ୱନି ଉଚ୍ଛୁଳିଲା ଚୈତନ ଆଜ୍ଞା ପାଇ ।

(ଶୂନ୍ୟସଂହିତା)

ଦିବାକର ଦାସ ମଧ୍ୟ ଲେଖନ୍ତି—

କହନ୍ତି ଚୈତନ୍ୟ ଗୋସାଇଁ । ପଞ୍ଚ ସଖାଙ୍କୁ ସଙ୍ଗେ ରହି ॥
ବୋଇଲେ ଜଗନ୍ନାଥ ଦାସ । ମୋହର ନିକଟେ ବେଗେ ଆସ ॥
ପୁଣି ରହିଲେ ବଳରାମ । ଆସ ମୋ ନିକଟେ ବହନ ॥
ଯଶୋବନ୍ତ ଦାସ ତୁ ଆସ । ଅଚ୍ୟୁତାନନ୍ଦ ଶିଶୁ ଦାସ ॥
ପ୍ରଭୁଙ୍କ ଶ୍ରୀମୁଖ ବଚନ । ରହିଲେ ଗୁରୁ ସନ୍ନିଧାନ ॥

ସୁଦର୍ଶନ ଦାସ ରଚିତ 'ଚୌରାଶୀ ଆଜ୍ଞା'ରେ ଉଲ୍ଲେଖ ଅଛି—

ଜନମ ହେଲେ ଭଗବାନ । ଚୈତନ୍ୟ ପ୍ରଭୁ ବୋଲି ଜାଣ ॥
ତାଙ୍କ ଆଜ୍ଞାରୁ ପଞ୍ଚସଖା । ଜନମ ହୋଇ ସଙ୍ଗେ ଲେଖା । ॥

ଜଗନ୍ନାଥ ଦାସ ବିଭୂତି—

ଜୀବ ଗୋସ୍ୱାମୀଙ୍କ ସୁଧାତ୍ରୟରେ ଲିଖିତ ଅଛି ଚୈତନ୍ୟ ରାଜାପ୍ରତାପ-ରୁଦ୍ରଙ୍କୁ ପରୀକ୍ଷା ଦେବାକୁ ଯାଇ ଷଡଭୁଜ ପ୍ରଦର୍ଶନ କରିଥିଲେ ; କିନ୍ତୁ ଜଗନ୍ନାଥ ଦାସ ଅଷ୍ଟଭୁଜ ପ୍ରଦର୍ଶନ କରି ରାଜାଙ୍କୁ ବିସ୍ମୟ ସାଗରରେ ନିମଜ୍ଜିତ କରାଇଲେ । ଚୈତନ୍ୟ ରାମଙ୍କର ଧନୁର୍ବାଣଧାରୀ ଦ୍ୱିଭୁଜ ଓ ମୁରଲୀଧାରୀ ଶ୍ରୀକୃଷ୍ଣଙ୍କର ଦ୍ୱିଭୁଜ ଏବଂ ନିଜର ଦ୍ୱିଭୁଜ ଦେଖାଇଥିଲେ । ମାତ୍ର ଜଗନ୍ନାଥ ଦାସ ରାମଙ୍କର ଦ୍ୱିଭୁଜ, କୃଷ୍ଣଙ୍କର ଦ୍ୱିଭୁଜ ତଥା ଜଗନ୍ନାଥଙ୍କର ଶଙ୍ଖଚକ୍ରଗଦାପଦ୍ମ ଚତୁର୍ଭୁଜ ପ୍ରଦର୍ଶନ କରିଥିଲେ । ଜଗନ୍ନାଥ ଅତିବଡ଼ୀ ନାମକୁ ସାର୍ଥକ କରିଥିଲେ ।

କିଂବଦନ୍ତୀ କହେ ଯେ ରାଜା ପ୍ରତାପରୁଦ୍ର ଅନ୍ତଃପୁରରେ ରାଣୀମାନଙ୍କୁ ଭାଗବତ ଶୁଣାଇବାକୁ ଜଗନ୍ନାଥଙ୍କୁ ପ୍ରେରଣ କରିଥିଲେ । ଦିନେ ଭାଗବତର ରାସପଞ୍ଚାଧ୍ୟାୟ ପାଠକାଳରେ ଅନ୍ତଃପୁର ବନିତାଗଣ ହତଚେତନା ହୋଇ କୃଷ୍ଣ କୃଷ୍ଣ ବୋଲି ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କରିଥିଲେ । ଜଗନ୍ନାଥ ଦାସ ମଧ୍ୟ ରାଧା ରାଧା ବୋଲି ଚିତ୍କାର କରି ଉଲଗ୍ନ ଅବସ୍ଥାରେ ନାଚୁଥିଲେ । ରାଜମନ୍ତ୍ରୀ ଏକଥା ସ୍ୱଚକ୍ଷୁରେ ଦେଖି ଅତିଷ୍ଠ ହୋଇ ଯାଇଥିଲେ । ସଙ୍ଗେ ସଙ୍ଗେ ଜଗନ୍ନାଥ ଦାସଙ୍କୁ ବନ୍ଦୀକରାଗଲା । ଏଥିରେ ଦାସଙ୍କ ବିଷୟରେ ନାନା ଗୁଜବ ଉଠିଥିଲା । ପରଦିନ ଜେଲଖାନାରେ ଦେଖିଲା ବେଳକୁ ଜଗନ୍ନାଥ ଦାସ ନାହାନ୍ତି । ଯେ ରୂପସୀ ସୁନ୍ଦରୀ ତରୁଣୀ ହୋଇ ଯାଇଛନ୍ତି । ରାଜକର୍ମଚାରୀମାନେ କହିଲେ, "ରାଜା ବନ୍ଦୀ ଗୃହରେ ଜଗନ୍ନାଥ ଦାସ ସ୍ତ୍ରୀ ବେଶରେ ଅଛନ୍ତି ।" ରାଜା ଓ ରାଜମନ୍ତ୍ରୀ ପରିହାସ କରି କହିଲେ 'ଆତ୍ମରକ୍ଷା ପାଇଁ ଏ ଏକ ପ୍ରହସନ ମାତ୍ର' । ସଙ୍ଗେ ସଙ୍ଗେ ରାଜାଦେଶରେ ଜଗନ୍ନାଥଙ୍କୁ ପରୀକ୍ଷା କରିବା ପାଇଁ କର୍ମଚାରୀ ତତ୍ପର ହେଲେ । ଜଗନ୍ନାଥ ଦାସ କହିଲେ, ମୁଁ ପାକ ସ୍ୱର୍ଣ୍ଣ ହୋଇଛି । ରାଜକର୍ମଚାରୀ ପରୀକ୍ଷା କରି ଦେଖିଲେ ଯେ ତାହା ପ୍ରକୃତ ସତ୍ୟ । ଦାସଙ୍କ ସ୍ତନ ଜାନୁ ଯୌବନ ଚିହ୍ନାଦି ସୁସ୍ପଷ୍ଟଭାବେ ପ୍ରତିଭାତ । ରାଜ ପ୍ରଜା ସମସ୍ତେ ସ୍ତମ୍ଭୀତ, ରାଜା ବିନୀତଭାବେ ଜଗନ୍ନାଥ ଦାସଙ୍କୁ ମୁକ୍ତି ଦେଲେ । ସେ ସମ୍ପର୍କରେ ଜଗନ୍ନାଥ ଦାସ କହୁଛନ୍ତି :—

> ପୁରୁଷେ ପୁରୁଷ ସ୍ତିରୀଙ୍କ ସଙ୍ଗତେ ସ୍ତିରୀ ।
> ଏଣୁ ଭୟଯେ ନଥାଇ ମୋହରି ।

'ଦାର୍ଢ୍ୟତା ଭକ୍ତି'ରେ ଅଛି ଯେ—"ମର୍ମ ସ୍ଥଳରୁ ଶ୍ରୋଣୀ ବହି
ବସନ ବିବର୍ଣ୍ଣ ଦିଶଇ ।"

ଦାସଙ୍କୁ ପରୀକ୍ଷା କରିବେ କଣ ? ରଜୋବତୀ ନାରୀର ଯେପରି ପୃଷ୍ଠ-ଭାଗରେ ଦୌର୍ଭାଗ୍ୟ ଚିହ୍ନ ସ୍ୱେଦର ବିହିତ ହୋଇଥାଏ ଠିକ୍ ସେପରି ଦେଖି ରାଜା ଦାସଙ୍କୁ ମୁକ୍ତି ଦେଇଥିଲେ ।

ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଅନ୍ୟ ଏକ ଅପୂର୍ବ ଜନଶ୍ରୁତି ତଥା ଲିଖିତ ବିବରଣୀ ମଧ୍ୟ ଅଛି । ଜଗନ୍ନାଥ ଦାସ ଦିବା ଭାଗରେ ଓ ରାତ୍ରରେ ଭାଗବତ ପାରାୟଣ କରିସାରିବା ପରେ ମେଧା ସୁମେଧା ଦାସୀ ଦ୍ୱୟ ସ୍ୱର୍ଗରୁ ମନ୍ଦିରକୁ ଆସନ୍ତି, ମନ୍ଦିରରୁ ରାତ୍ର ବାରଟା ସମୟରେ ଦାସଙ୍କ ଘରେ ପହଞ୍ଚି ସମସ୍ତସେବା କରନ୍ତି, ବସ୍ତ୍ର ଧୋଇବା, ଖୁଆଇବା କାର୍ଯ୍ୟ ମଧ୍ୟ ତାଙ୍କଦ୍ୱାରା ସମ୍ପନ୍ନ ହୁଏ । ଦାସେ ଭୋଜନ କରିସାରିଲେ ଦାସୀଦ୍ୱୟ ଶୂନ୍ୟରେ ଉଭେଇଯାନ୍ତି । ସେହି ଘଟଣାକୁ ନେଇ ଦାସେ ବହୁ ଅସୁବିଧାର ସମ୍ମୁଖୀନ ହୋଇ ମଧ୍ୟ ଶେଷରେ ସମସ୍ତଙ୍କ ନିକଟରେ ମହାପୁରୁଷତ୍ୱ ସୁରକ୍ଷା କରିଛନ୍ତି । 'ପାଦପଦ୍ମ ସୁଧାନିଧି'ରେ ଏ ସମ୍ପର୍କରେ ନିମ୍ନ ପ୍ରକାରେ ଲେଖାଅଛି —

> ଏମନ୍ତେ ଶ୍ରୀ ଗୁରୁ ସ୍ୱାମୀ ଜଗନ୍ନାଥ ଦାସ
> ଜଗନ୍ନାଥଙ୍କର ସେବା ବଡ ଅବକାଶ ।
>
> ମହାପ୍ରସାଦ ହସ୍ତରେ ଘେନିକରି ଆସି
> ଯାଇ ମଠେ ପ୍ରବେଶ ହୋଇଲେ ସ୍ୱାମୀ ଆସି ।

ସ୍ୱର୍ଗରୁ ଦୁଇସଖୀ ପ୍ରବେଶ ପାଶରେ
ପାଦପଦ୍ମ ଧୋଇ ବସ୍ତ୍ର ଧୋଇ ଶୁଖାଇଲେ ।
ଆସନ ସଜାଡ଼ି ଦେଇ ଉଭୟ ଦୁଇ ସଖୀ
ମହାପ୍ରସାଦ ଭୁଂଜିଲେ ସ୍ୱାମୀ ହୋଇ ସୁଖୀ ।
ଦୁଇ ସଖୀ ବସ୍ତ୍ର ଧୋଇ ଶୁଖାଇ ତକ୍ଷଣୀ
ସ୍ୱାମୀଙ୍କ ଅଗ୍ରତେ ଉଭା ମାଗନ୍ତି ମେଲାଣି । 'ପାଦପଦ୍ମ ସୁଧାନିଧି'
(ଅଧ୍ୟାୟ ୧୪।୧୫ ପଦ)

ପୁଣି ଲେଖାଅଛି—

ନିତି ଦଶ ଘଡ଼ିଠାରେ ଦେଉଳରୁ ଆସି
ଦୁଇଘଡ଼ି ମଧ୍ୟରେ ଯେ କର୍ମସାରି ବସି ।
ମେଧା ସୁମେଧା ଦୁଇ ସଖୀ ଉଭାହୋଇ
ସ୍ୱାମୀଙ୍କୁ ମେଲାଣି ମାଗି ଅନ୍ତର୍ଦ୍ଧାନେ ଯାଇ ।

'ପାଦପଦ୍ମ ସୁଧାନିଧି' ପଞ୍ଚଦଶାଧ୍ୟାୟ ୨୧ ପଦ

ଏହି ମେଧା ସୁମେଧା ପ୍ରସଙ୍ଗରେ ମହାପୁରୁଷ ଅଚ୍ୟୁତାନନ୍ଦ କହନ୍ତି ଯେ ଜଗନ୍ନାଥ ନିଜେ ଶ୍ରୀମତୀ ରାଧିକାଙ୍କ ଅଂଶାବତାର ଏବଂ ମେଧା-ସୁମେଧା ଦୁଇ ସଖୀ ବିଶାଖା ଓ ଲଳିତା ଅଟନ୍ତି । ଏମାନଙ୍କ ସମ୍ବନ୍ଧ ନିତ୍ୟଥିବାରୁ ରାଧା ବ୍ୟତୀତ ବିଶାଖା ଲଳିତା ବଞ୍ଚିରହିବା ଅସମ୍ଭବ ; ତେଣୁ ସେମାନେ ଆସନ୍ତି । ଆସିବାର ମୁଖ୍ୟକାରଣ ପୂର୍ବଜନ୍ମ ଚରିତ ସ୍ମରଣ କରାଇବା । ଦାସେ ସେହି ଅନୁସାରେ ଭାଗବତଲେଖିବାର ସୁଯୋଗ ପାଇଛନ୍ତି । 'ଯୁଗାବ୍ଧିଗୀତା'
(ଅଚ୍ୟୁତାନନ୍ଦ ଦାସ)

ଅନ୍ୟ ଏକ କିମ୍ବଦନ୍ତୀ ହେଲା ଜଗନ୍ନାଥ ଦାସଙ୍କ ରାଧା ବେଶର ଚମତ୍କାରିତା । ସେହି ବେଶ ଓ ଭାବ ଦେଖି ଚୈତନ୍ୟ ପ୍ରେମବିହ୍ୱଳ ହୋଇ ଯାଇଥିଲେ । ପୂର୍ବ ଜନ୍ମରେ ରାଧା ବିଶେଷ କେଶପ୍ରିୟା ଥିଲେ । ସେହି ରାଧାଙ୍କ ପରି ଜଗନ୍ନାଥ ଦାସଙ୍କର କେଶପାଶ କୁଟୀଳ ଓ ଚିତ୍ତାକର୍ଷକ ଥିଲା । କେଶ ପ୍ରସଙ୍ଗରେ ଅତ୍ୟନ୍ତ ଚତୁର ଜଗନ୍ନାଥ ଦାସ ଅପୂର୍ବ ସୁନ୍ଦର ବର୍ଣ୍ଣନା କରିଛନ୍ତି । ଯେ ରାଧା ଥିବାବେଳେ କୃଷ୍ଣ କିପରି ତଦୀୟ କବରୀରେ ମଲ୍ଲୀ କଳିକା ସଜ୍ଜିତ କରୁଥିଲେ ଏବଂ ସମ୍ଭୋଗ ପରେ କିପରି ମଲ୍ଲୀକଳିଗୁଡ଼ିକ ଗୋଟି ଗୋଟି ହୋଇ ଗଳି ପଡୁଥିଲା । ଏବେ ବି ସେ ମନେ ରଖିଛନ୍ତି ବୋଲି ମେଧା ସୁମେଧା ସଙ୍ଗରେ ଆଳାପ କରନ୍ତି । ଶ୍ରୀମଦ୍ ଭାଗବତରେ ଯେତେ ନାରୀ ବର୍ଣ୍ଣନା କରିଛନ୍ତି ସମସ୍ତ ବର୍ଣ୍ଣନାରେ ମଲ୍ଲିକା କଳିକା ବିଗଳିତ କବରୀର ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର ଭାବ ସୃଷ୍ଟି କରିଅଛି । ସେ ନିଜେ ମଧ୍ୟ ନିଜକୁ ରାଧା ବୋଲି କହିଛନ୍ତି । ଭାଗବତରେ ଲେଖାଅଛି—

ରାଧାର ମାତ୍ର ତିଳେମାତ୍ର । ଭେଦ ଯେ ନାହିଁ କଦାଚିତ୍ତ ॥
ସେ ସଖୀ ହେବେ କେଉଁ ଠାଇଁ । ମୁଁ ତାଙ୍କୁ ଲଭିବି କିପାଇଁ ॥
ତ୍ରୟୋଦଶ-ଭାଗବତ

"ଭକ୍ତଳକ୍ଷ୍ମୀ ଜଗନ୍ନାଥ ଦାସନ୍ତୁ ରାଧିକା ମତା"— (ପ୍ରେମସାରଚନ୍ଦ୍ର)

ଜଗନ୍ନାଥ ଦାସଙ୍କ ନିଜ ଭାଷାରେ— '

ମୁହିଁ ରାଧା ଅଂଶ ସେହୁ କୃଷ୍ଣ ଅଂଶ ଯୁଗଳେ ହୋଇବୁ ମେଳ ।
ନୀଳାଚଳ ରଜା ପ୍ରତାପ ରୁଦ୍ର ସେ କ୍ଷେତ୍ରାଧିପ ମହୀପାଳ ।
(ଭବିଷ୍ୟତମାଳିକା—ଜଗନ୍ନାଥ)

ଶ୍ରୀଗୁରୁଙ୍କ ପାଦେ ପଡ଼ି ଷୋଳଶିଷ୍ୟ କରଯୋଡ଼ି
ଶତଦଣ୍ଡ ପ୍ରଣାମ ଶ୍ରୀଗୁରୁଙ୍କ ପାଦେ
ଭୋଗୁରୁ ଯେ ତୁମ୍ଭେ ଅଟ ସ୍ୱୟଂ ରାଧିକା ପ୍ରକଟ
ଅତୀବଡ଼ କଥା ଯହୁଁ କହିବା ଏବେ ।

ପ୍ରଥମ ଅଧ୍ୟାୟ
'ପାଦପଦ୍ମ ସୁଧାନିଧି'

ମହାପୁରୁଷ ଜଗନ୍ନାଥ ଦାସଙ୍କର ଏହି ଅଲୌକିକ ଗୁଣରାଜିରେ ବିମୁଗ୍ଧ ଗଜପତି ପ୍ରତାପରୁଦ୍ର ମାର୍କଣ୍ଡ ସାହି ନିକଟରେ ଦାସଙ୍କର ମଠ ନିର୍ମାଣ କରାଇ ତାର ବିହିତ ବ୍ୟବସ୍ଥା ସବୁ କରାଇ ଦେଲାପରେ ବର୍ତ୍ତମାନ ଯେଉଁ ସାତ ଲହଡ଼ି ମଠ ରହିଛି ସେଠାରେ ଜଗନ୍ନାଥ ସାଧନକ୍ଷେତ୍ର ରୂପେ ବାଛି ନେଇଥିଲେ । ସାଧନା ସିଦ୍ଧ ହେଲା । ଦିନେ ସାଧନା ଅବସ୍ଥାରେ ସମୁଦ୍ର ମାଡ଼ିଆସିବାରୁ ସେ ହସ୍ତ ଉତ୍ତୋଳନ ପୂର୍ବକ ସମୁଦ୍ରକୁ ବାରଣ କଲେ ଆଗକୁ ଆସିବାକୁ । ଫଳତଃ ସେ ସ୍ଥାନଠାରୁ ସାତ ଲହଡ଼ି ସମୁଦ୍ର ଘୁଞ୍ଚିଯିବାରୁ ସେଠାରେ ସ୍ୱଆଶ୍ରମ ନିର୍ମାଣ କଲେ । ସେହି ବିଚିତ୍ର ଲୀଳାର ସ୍ମୃତି ସ୍ୱରୂପ ଅଦ୍ୟାପି ସେଠାକୁ ଲହରୀ ଆସୁ ନଥିବା ବିଚିତ୍ର ଘଟଣା ଲିଖିତ ଓ କଥିତ ରୂପେ ରୂପ ନେଇଛି । ଏ ପ୍ରସଙ୍ଗରେ 'ଅବତାର ମାଳିକା'ରେ ଜଗନ୍ନାଥ ଦାସଙ୍କ ସମ୍ବନ୍ଧରେ ଅଚ୍ୟୁତାନନ୍ଦ କହିଛନ୍ତି—

ଜଗନ୍ନାଥ ଦାସ ନୀଳାଚଳରେ
ସମାଧି ସ୍ଥାପନ ବେରୁଣପୁରେ ।
ସାତ ଲହରୀ ଯେ ଛାଡ଼ିଣ ଗଲା
ଜଗନ୍ନାଥ ଦାସ ଆଶ୍ରମକଲା । (ଅବତାର ମାଳିକା)

ବଡ଼ ଓଡ଼ିଆ ମଠ ଅପେକ୍ଷା ଜଗନ୍ନାଥ ଦାସଙ୍କ ସାତ ଲହଡ଼ୀ ମଠ ଅତ୍ୟନ୍ତ ପ୍ରିୟତମ ଥିଲା । କାହାରି କାହାରି ମତରେ "ସାତ ଲହଡ଼ୀ ମଠ-ସାଧନାପୀଠ ଏବଂ ବଡ଼ ଓଡ଼ିଆ ମଠ ଭୋଗ ମଠ" । ଏହି ବିଭୂତି ବ୍ୟତୀତ "ମଣିବରଣ-ଗୀତା' ଅନୁସାରେ ଭାରତ ଭ୍ରମଣ ପ୍ରସଙ୍ଗରେ ନାନା ବିଭୂତି ମଧ୍ୟରୁ କାମାକ୍ଷା ବନ୍ଦୀ ପ୍ରସଙ୍ଗ, ତିବ୍ବତରେ ଜଣେ ବୁଦ୍ଧଙ୍କ ସହିତ ଆଲୋଚନା ପ୍ରସଙ୍ଗ ଏପରି ନାନା ପ୍ରସଙ୍ଗମାନ ରହିଛି । କଳେବର ବୃଦ୍ଧି ଭୟରେ ସେସବୁର ବିଶଦ ଆଲୋଚନା ଏଠାରେ ପରିତ୍ୟାଗ କରୁଛୁ ।

## ଜଗନ୍ନାଥ ଦାସଙ୍କ ସାଧନା

ଚୈତନ୍ୟ ଆଗମନ ପୂର୍ବରୁ ଜଗନ୍ନାଥ ଦାସ ଯୋଗସାଧନାରେ ସିଦ୍ଧ ହୋଇ ଯାଇଥିଲେ । ତଦୀୟ ଗ୍ରନ୍ଥମାନ ଅଧ୍ୟୟନ କରିବାଦ୍ୱାରା ସହଜରେ ଜଣାଯାଏ ଯେ ତଦୀୟ ସାଧନା ପ୍ରଣାଳୀ ଅତ୍ୟନ୍ତ ରହସ୍ୟପୂର୍ଣ୍ଣ । ସମସ୍ତ ପଞ୍ଚସଖା ଯେଉଁ ସାଧନା କରିଛନ୍ତି ତା ଏକପ୍ରକାର । ପଞ୍ଚସଖା ସମସ୍ତେ ଜ୍ଞାନୀ ଭକ୍ତ । ଏଣୁ ମୁଖ୍ୟତଃ ଭକ୍ତ ଦୁଇ ପ୍ରକାର ସଗୁଣ ଭକ୍ତି ଓ ନିର୍ଗୁଣ ଭକ୍ତି । ସଗୁଣଭକ୍ତ ରାମାଶ୍ରୟୀ କୃଷ୍ଣାଶ୍ରୟୀ, ରାଧାଶ୍ରୟୀ, ଅର୍ଥାତ୍ ବଳଭଦ୍ରାଶ୍ରୟୀ, ଜଗନ୍ନାଥାଶ୍ରୟୀ ଓ ସୁଭଦ୍ରାଶ୍ରୟୀ

ଏପରି ତ୍ରିବିଧ । ନିର୍ଗୁଣ ଭକ୍ତି ଦ୍ୱିବିଧ—ଜ୍ଞାନାଶ୍ରୟୀ ଓ ପ୍ରେମାଶ୍ରୟୀ । ଜ୍ଞାନାଶ୍ରୟୀ ବେଦମୂଳକ ଏବଂ ପ୍ରେମାଶ୍ରୟୀ ଭାବମୂଳକ । ଅତଏବ ଜଗନ୍ନାଥ ଦାସ ସଗୁଣ ନିର୍ଗୁଣ ଉଭୟର ସାଧକ ଥିଲେ ଏବଂ ଉଭୟ ସିଦ୍ଧିରେ ସେ ସଫଳତା ଲାଭ କରିଥିଲେ । ସେମାନେ ବୁଝିଥିଲେ ନିର୍ଗୁଣବାଦୀ ବୁଦ୍ଧ ଜୈନ ମୋରେଖାଦିମାନଙ୍କ ଶୂନ୍ୟ ନିର୍ଗୁଣ ଯେପରି ଆବଶ୍ୟକ, ବିଦୁର ପ୍ରହ୍ଲାଦ ଶୁକସନକାଦିଙ୍କର ସଗୁଣ ସାଧନା ମଧ୍ୟ ଏକାନ୍ତ ଆବଶ୍ୟକ । ଏହି ସଗୁଣ ନିର୍ଗୁଣ ମନୁଷ୍ୟର ଚକ୍ଷୁ ସହିତ ତୁଳନା କରିଛନ୍ତି । ଗୋଟିଏ ଆଖି ନଷ୍ଟହେଲେ କଣା ଓ ଉଭୟ ନଷ୍ଟହେଲେ ଅନ୍ଧ ହୁଏ । ଠିକ୍ ସେଭଳି ଏହି ସାଧନା ।

† ସଗୁଣ ସାଧନା—ଯନ୍ତ୍ର, ମନ୍ତ୍ର, ତନ୍ତ୍ର, ଛାୟା, ଏହି ଚାରିଗୋଟି ସଗୁଣ ସାଧନା ।

ନିର୍ଗୁଣ ସାଧନା—ଜ୍ୟୋତି, ଅବାଡ଼, ହଂସ, ସମାଧି, ଏହି ଚାରିଗୋଟି ନିର୍ଗୁଣ ସାଧନା ଅଟେ ।

ଏ ଯେଉଁ ସଗୁଣ ସାଧନାରେ ନିର୍ଗୁଣଭାବ ଓ ନିର୍ଗୁଣ ସାଧନାରେ ସଗୁଣ ଭାବନା ରହିଲେ ଯଥାର୍ଥ ସାଧନା ବୋଲି କହିବା ସମୀଚୀନ । ଶଙ୍କର ବ୍ୟାସ ବାଲ୍ମିକି ଶୁକ ପରାଶର ବଶିଷ୍ଠ ନାରଦାଦି ମୁନିମାନେ ଏହି ମାର୍ଗର ସାଧନାକାରୀ । ଏହାଙ୍କ ମତରେ ସଗୁଣ ଦେବତା ଜଗନ୍ନାଥ ଓ ନିର୍ଗୁଣଦେବତା ଜଗନ୍ନାଥ ।

ଏହି ସଗୁଣ ନିର୍ଗୁଣସାଧନା ହିଁ ପିଣ୍ଡ ବ୍ରହ୍ମାଣ୍ଡ ସାଧନା । ଜଗନ୍ନାଥ ଦାସ ପିଣ୍ଡ ବ୍ରହ୍ମାଣ୍ଡ ସାଧନା କରିଥିଲେ । ଜଗନ୍ନାଥ ତତ୍ତ୍ୱ ପଞ୍ଚସଖା ଦୃଷ୍ଟିକୋଣରେ ଅତ୍ୟନ୍ତ ମହୀୟାନ ଥିଲା । ରୂପରେ ଜଗନ୍ନାଥ, ଅରୂପରେ ଜଗନ୍ନାଥ, ଯନ୍ତ୍ରରେ ଜଗନ୍ନାଥ, ମନ୍ତ୍ରରେ ଜଗନ୍ନାଥ, ତନ୍ତ୍ରରେ ଜଗନ୍ନାଥ, ତତ୍ତ୍ୱରେ ଜଗନ୍ନାଥ, ବୀଜରେ ଜଗନ୍ନାଥ, ସ୍ୱର ସାଧନରେ ଜଗନ୍ନାଥ, ଭକ୍ତି ସାଧନରେ ଜଗନ୍ନାଥ, ଶବ୍ଦ ସାଧନରେ ଜଗନ୍ନାଥ, ଭାବରେ ଜଗନ୍ନାଥ, ରସସାଧନରେ ଜଗନ୍ନାଥ, ପ୍ରେମରେ ଜଗନ୍ନାଥ, ନାଦରେ ଜଗନ୍ନାଥ, ବିନ୍ଦୁରେ ଜଗନ୍ନାଥ, ଭକ୍ତିରେ ଜଗନ୍ନାଥ, ଗାୟତ୍ରୀରେ ମଧ୍ୟ ଜଗନ୍ନାଥ ବୋଲି ଜଗନ୍ନାଥ ଦାସ ନିଜର ଅଭିମତ ପ୍ରକାଶ କରିଛନ୍ତି ଏବଂ ସଗୁଣ ନିର୍ଗୁଣ ଉଭୟ ପ୍ରକ୍ରିୟାରେ ଏହି ତତ୍ତ୍ୱ ଜାଣି ହେବାର ମଧ୍ୟ ସୂଚନା ଦେଇଛନ୍ତି ।

ଓଁକାରରେ ଜଗନ୍ନାଥ ତତ୍ତ୍ୱ, ପଞ୍ଚସଖାରେ ଜଗନ୍ନାଥତତ୍ତ୍ୱ । ପଞ୍ଚଭୂତରେ ଜଗନ୍ନାଥ ତତ୍ତ୍ୱ ବ୍ୟାପୃତ ବୋଲି ପଞ୍ଚସଖାମାନଙ୍କ ମତ । ପଞ୍ଚସଖା ବା ଜଗନ୍ନାଥ ଦାସଙ୍କ ସାର୍ବଜନୀନ ଦର୍ଶନତତ୍ତ୍ୱ ମୂଳରେ ଥିଲା ଗଭୀର ଅନ୍ତର୍ନିଷ୍ଠା । ବାହ୍ୟରେ

---

† ସାଧନା ସମ୍ବନ୍ଧୀୟ ରହସ୍ୟ ଅନ୍ୟ ଏକ ପ୍ରବନ୍ଧରେ ବ୍ୟାପକ ଭାବେ ଆଲୋଚନା କରିଛି ତେଣୁ ଏଠାରେ ତାର କିଞ୍ଚିତ୍ ଆଭାସ ମାତ୍ର ପ୍ରକାଶ କରୁଅଛି ।

* "ଯନ୍ତ୍ରଂ ମନ୍ତ୍ରଂ ତନ୍ତ୍ରଂ ଚୈବ ଛାୟା ଜ୍ୟୋତି ଅବାଡ଼ଙ୍କ ହଂସ ସମାଧି ଉସଗୁଣଂ ଯୋଜାନାତି ସ ବୈଷ୍ଣବଃ । ଅଷ୍ଟୌ ଗୁଣ ନଜାନାତି ମନୁ ନହରତିସକାୟଃ ମର୍ଦ୍ଦିଶାସ୍ତ୍ର ଅଧିକାରଂ ସଗୁଣଂ ନିର୍ଗୁଣଂ ସଦା ।"

ନେଇ ଯେମିତି ବିବାଦ କରିବା ସେମାନଙ୍କର ମାନସିକ ଅବସ୍ଥା ନଥିଲା । ଅନ୍ତଃକରଣର ଶୁଚିତ୍ୱକୁ କେଉଁ ଧର୍ମ ବା ମାନବିକତା ଅସ୍ୱୀକାର କରିବ ? ପ୍ରକୃତ ଧର୍ମତତ୍ତ୍ୱ ବା ସାଧନ ତତ୍ତ୍ୱ ବାହାରେ ନଥାଏ, ଥାଏ ସ୍ୱୀୟ ଅନ୍ତରାଳରେ । କାରଣ ଧର୍ମସ୍ୟ ତତ୍ତ୍ୱ ନିହିତଂ ଗୁହାୟାଂ/ ମହାଜନୋ ଯେନ ଗତଃ ସ ପନ୍ଥାଃ । ବାସ୍ତବରେ ଜଗନ୍ନାଥ ଥିଲେ ଏ ଜାତିର ମହନ୍ତ, ମହାଜନ ଓ ପଥ ନିର୍ଦ୍ଦେଶକ । ତାଙ୍କ ସ୍ୱୋକ୍ତିରେ—

ଆତ୍ମଜ୍ଞାନଂ ମାତୃଗର୍ଭେ ତତ୍ତ୍ୱଜ୍ଞାନଂ ବିଗ୍ରହଣେ
ସତ୍ୟ ସାରଂ ବ୍ରହ୍ମବିଦ୍ୟା ଦୀକ୍ଷା ସନ୍ମାର୍ଗ ଦର୍ଶନମ୍
—ଜଗନ୍ନାଥ ଦାସ

ମାତୃ ଗର୍ଭରେ ଆତ୍ମଜ୍ଞାନ, ବିଗ୍ରହରେ ତତ୍ତ୍ୱଜ୍ଞାନ, ସତ୍ୟ ରୂପ ବ୍ରହ୍ମବିଦ୍ୟାହିଁ ସଂସାରର ସାରବସ୍ତୁ; ସନ୍ମାର୍ଗ ହିଁ ଦୀକ୍ଷା ବୋଲି ବୁଝାଇଛନ୍ତି ।

ଜଗନ୍ନାଥ ପିତାମାତା ଭ୍ରାତା ଦାରଶ୍ଚ ମେ ସଦା
ବନ୍ଧୁ ସୁହୃତ୍ ତଥେଷ୍ଟଂଚ ମିତ୍ରଂ ତ୍ରୟୀଜଗତ୍ ପ୍ରଭୁଃ । (ଜଗନ୍ନାଥ)

ପିତା ମାତା ଭ୍ରାତା ପତ୍ନୀ ବନ୍ଧୁ ମିତ୍ର ଇଷ୍ଟଦେବ ମଧ୍ୟ ସେହି ଜଗନ୍ନାଥ ବୋଲି କହିଛନ୍ତି—

ପ୍ରଣମାମି କୃପାଦୃଷ୍ଟିଂ କୃତାର୍ଥଂ କୃତଭୂତଳଂ
ସର୍ବ ବାଞ୍ଛା କଳ୍ପତରୁଂ ଶ୍ରୀଗୁରୁ ପୁରୁଷୋତ୍ତମମ୍
(ପାଦପଦ୍ମ ସୁଧାନିଧିଃ)

ଏପରି ନମସ୍କାର ଜ୍ଞାପନ କରିଛନ୍ତି । ଏଠାରେ ଶ୍ରୀ ସୁଭଦ୍ରା, ଗୁରୁ ବଳଭଦ୍ର, ପୁରୁଷୋତ୍ତମ-ଜଗନ୍ନାଥଙ୍କୁ ଲକ୍ଷ୍ୟ କରାଯାଇଛି ।

ସାଧନ ପ୍ରସଙ୍ଗରେ ଜଗନ୍ନାଥ କହିଛନ୍ତି—

ଛାୟା ଜ୍ୟୋତି ଅବାଙ୍ଗଂଚ ହଂସ ଦୀକ୍ଷା ତଥୈବଚ
ହଜ ସମାଧି ସେଗୁଣଂ ଯୋଜାନାତି ସ ବୈଷ୍ଣବଃ ।
(ଜଗନ୍ନାଥ ଦାସ-ଉଦ୍ଧବବୋଧନ)

ଅର୍ଥାତ୍ ଛାୟାଜ୍ୟୋତି ଅବାଙ୍ଗ, ହଂସଦୀକ୍ଷା, ହଜ, ସମାଧି, ରସଗୁଣ ଯେ ଜାଣନ୍ତି ସେମାନେ ବୈଷ୍ଣବ । ଉଦ୍ଧବ ଶିଷ୍ୟକୁ ସାଧନ କଥା କହୁଛନ୍ତି :—

ଅର୍ଦ୍ଧରାତ୍ରେ ଜ୍ୟୋତିମୂର୍ତ୍ତିଃ ପ୍ରାତଃକାଳେ ଅବାଙ୍ଗକମ୍
ଦିନମଧ୍ୟାହ୍ନେ ବାଛାୟାଂଚ ଜାନନ୍ତି ଗୋପ ବାଳକାଃ

'ଗୋପ ବାଳକାଃ' ବୋଲି ଅଚ୍ୟୁତାନନ୍ଦାଦିଙ୍କୁ ଓ ନିଜକୁ ମଧ୍ୟ ଅଭିହିତ କରିଛନ୍ତି ।

ସନ୍ଧ୍ୟାୟାଂ ଲୟଯୋଧ୍ୟାନଂ ଯେ ଜନ୍ମା ଭଙ୍ଗୀମୂର୍ତ୍ତିକଂ
ନାମମୂର୍ତ୍ତି ଚତୁର୍ଲୀଳା ଗୋଲୋକ ନିତ୍ୟ ଲୀଳକମ୍
ଜଗନ୍ନାଥ ଦାସ (ଉଦ୍ଧବବୋଧିନ୍ୟାମ୍)

ଅର୍ଥାତ୍ ଅର୍ଦ୍ଧରାତ୍ରରେ ଜ୍ୟୋତିଃସାଧନ, ପ୍ରାତଃକାଳରେ ଅବାଙ୍ଗ ସାଧନ, ମଧ୍ୟାହ୍ନରେ ଛାୟାସାଧନ ଗୋ ବାଳକାଃ (ପଞ୍ଚସଖାମାନେ) ଜାଣନ୍ତି । ସନ୍ଧ୍ୟାରେ

ଲୟାଙ୍ଗ ସ୍ୱର ସାଧନ ମୂର୍ତ୍ତିସାଧନ ଉପାଧିଧ୍ୟାନ ନାମ ଚତୁର୍ଲୀଳା ସାଧନ, ଗୋଲୋକର ନିତ୍ୟଲୀଳା ମାଧ୍ୟ ଜାଣିଛନ୍ତି । ଏହାହିଁ ଥିଲା ଜଗନ୍ନାଥ ଦାସଙ୍କ ସାଧନା ।

ସେ ଲୀଳାଙ୍ଗ ସାଧନ ସଂପର୍କରେ କହିଛନ୍ତି ଯେ:—

ଲୀଳାଙ୍ଗୋ ରାଧିକା ଚୈବ ବିଳାସୋ ଗୋପିନା ତଥା
କ୍ରୀଡ଼ାଙ୍ଗୋ ସୁବଳାଦ୍ୟଶ୍ଚ ଲୟାଙ୍ଗୋ ନାରଦା ଦୟଃ
ତତ୍ତ୍ୱାଙ୍ଗୋ ଅବତାରସ୍ୟ ପଞ୍ଚାଙ୍ଗ ପରିକୀର୍ତ୍ତିତମ୍ ।

ଇତ୍ୟାଦି ବଳରେ ଜଣାଯାଇଛି ଯେ ଜଗନ୍ନାଥ ବହୁ ପ୍ରକାର ସାଧନା ଜାଣିଥିଲେ । ତନ୍ମଧ୍ୟରୁ କେତେକ ଏଠାରେ ନିମ୍ନଲିଖିତ କ୍ରମେ ଦିଆଗଲା ।

'ସେ ଥିଲେ ଶବ୍ଦବ୍ରହ୍ମ ସାଧକ, ନାମବ୍ରହ୍ମ, କାମବ୍ରହ୍ମ, ବୀଜବ୍ରହ୍ମ, ଅନାମ-ବ୍ରହ୍ମ, ହଂସ ସାଧକ, ଧ୍ୱନିସାଧକ, ରସସାଧକ, ପ୍ରେମସାଧକ, ତଥା ସ୍ୱର-ସାଧକ । ଉପମନ୍ୟ ବହୁ ବିଶ୍ୱହର କେଉଁ ସାଧନା କେତେବେଳେ କରୁଥିଲେ ତାହା ଜାଣିବା ଗବେଷକର ବୁଦ୍ଧି ବୃତ୍ତିର ବାହାର କଥା । ସେ ଆତ୍ମସାଧକ ଥିଲେ :—

"ଆତ୍ମା ଭିନ୍ନ ନୁହେଁ ଜାଣିଥାନି ଦେହେ ଆତ୍ମାସ୍ୱରୂପେ ଘଟଣା
ଆତ୍ମା ସଙ୍ଗେ ଯେହୁ ପୀରତି କରନ୍ତି ସେହି ସାଧୁରେଟି ଗଣା ।"

(ଜଗନ୍ନାଥ ଦାସ)

ସାଧକ ଜଗନ୍ନାଥଙ୍କର ସାଧ୍ୟ ଥିଲେ ଜଗନ୍ନାଥ ଏବଂ ସାଧନବସ୍ତୁ ଥିଲା ଯନ୍ତ୍ର ମନ୍ତ୍ର ତନ୍ତ୍ର ଓ ନାମ । ଏତଦ୍‌ବ୍ୟତୀତ ବୃନ୍ଦାବତୀସାଧନ, ଚନ୍ଦ୍ରାବଳୀସାଧନ, ବୃନ୍ଦାବନ ସାଧନ, ଯନ୍ତ୍ର ମନ୍ତ୍ର ତନ୍ତ୍ର ସାଧନ, ଜଗନ୍ନାଥ ବଳଭଦ୍ରଭଦ୍ରାସାଧନ, ତ୍ରିପୁରସାଧନ କରୁଥିଲେ । ପାତାଞ୍ଜଳଯୋଗଦର୍ଶନ ବ୍ୟତୀତ ଏହି ଜଗନ୍ନାଥାଦି ପଞ୍ଚସଖାମାନେ ଅଷ୍ଟାଙ୍ଗଯୋଗ ଭିନ୍ନ ପ୍ରକାରେ ସାଧନ କରୁଥିଲେ । † ଯଥା—(୧) ଲୟାଙ୍ଗ, (୨) ଲୀଳାଙ୍ଗ, (୩) ଯୋଗାଙ୍ଗ, (୪) ଭୋଗାଙ୍ଗ, (୫) ଧ୍ୟାନାଙ୍ଗ; (୬) ଭଜନାଙ୍ଗ, (୭) ଲକ୍ଷିବାଙ୍ଗ ଓ (୮) ବାଜାଙ୍ଗ ଏହି ଅଷ୍ଟାଙ୍ଗ ସାଧନ ଦ୍ୱାରା ଜଗନ୍ନାଥ ସାଧ୍ୟ ହୁଅନ୍ତି ବୋଲି ପଞ୍ଚସଖାଙ୍କ ମତ । ଜଗନ୍ନାଥ ଦାସ ଏସବୁ କ୍ରିୟାରେ ପାରଙ୍ଗମୀ ଥିଲେ ।

---

† ଜଗନ୍ନାଥ ଦାସ କୃତ 'ଷୋଳନାମ' ଗୀତାରେ :—

ଲୟାଙ୍ଗ ଲୀଳାଙ୍ଗ ଏହି ଭୋଗାଙ୍ଗ ଯୋଗାଙ୍ଗ କହି
ରତି ପ୍ରୀତି ଶ୍ରୁତି ଯୁକ୍ତି କେ କେଉଁଠାବ
ଲୟାଂଗ ଯେ ପ୍ରୀତି ଜାଣ ହରେ ହ୍ରୀଂ ଯେ ସେ ପ୍ରମାଣ
ଲୀଳାଙ୍ଗ ଯେ ସୁଭଦ୍ରିକା ରତିଏ ଠାବ ।

ଶ୍ରୁତିକୃଷ୍ଣ ଭୋଗାଙ୍ଗ କହି, ଯୋଗାଙ୍ଗ ମୁକ୍ତି ଧ୍ରୁବାରୟଂ ସୁଦର୍ଶନ ହିଁ ।

'ଶୂନ୍ୟସଂହିତା'ର ୭୦ ଅଧ୍ୟାୟରେ ଅଛି ଯେ, ଜଗନ୍ନାଥ ଅନନ୍ତ ବଳରାମ ଯଶୋବନ୍ତ ମନଯାନ ତତ୍ତ୍ୱ ଛାଣି ନଥିଲେ, ମହାପୁରୁଷ ଅଚ୍ୟୁତାନନ୍ଦ ଯନ୍ତ୍ର ମନ୍ତ୍ର କହିଦେବା ପରେ ପ୍ରଥମେ ବଳରାମ ମନଯାନରେ ଖେଳିଗଲେ ଓ ଦ୍ୱିତୀୟରେ ଜଗନ୍ନାଥ ମନଯାନରେ ଯାତାୟତ କରୁଥିଲେ । ଅତଏବ ଶିଷ୍ୟମାନଙ୍କ ସ୍ମରଣମାତ୍ରେ ଜଗନ୍ନାଥ ଶିଷ୍ୟଙ୍କ ନିକଟରେ ଉପଗତ ହେଉଥିଲେ ।

**ଶିଷ୍ୟବର୍ଗ :—**

ଅଚ୍ୟୁତାନନ୍ଦଙ୍କର ଦ୍ୱାଦଶ ଶିଷ୍ୟବର୍ଗ ପରି ଜଗନ୍ନାଥ ଦାସଙ୍କ ଷୋଳଜଣ ଶିଷ୍ୟ ଥିଲେ ଏବଂ ସେମାନେ ଅତିବଡ଼ୀ ସଂପ୍ରଦାୟର ସଂରକ୍ଷକ ଅଟନ୍ତି । ଏମାନେ ହେଲେ (୧) ସାର୍ବଭୌମ ଭଟ୍ଟାଚାର୍ଯ୍ୟ, (୨) ରାମଚନ୍ଦ୍ର, (୩) ଜନାର୍ଦ୍ଦନ (୪) ଗୋପାଳ, (୫) ଜଗନ୍ନାଥ, (୬) ଗୋପୀନାଥ, (୭) ଶ୍ରୀହରି, (୮) ଦାମ, (୯) ଚନ୍ଦନୀ ଦାସ, (୧୦) ଆଖଣ୍ଡଳ ଦାସ, (୧୧) କୃଷ୍ଣ ଦାସ, (୧୨) ବନମାଳୀ ଦାସ, (୧୩) ମଧୁସୂଦନ ଦାସ, (୧୪) ନିତ୍ୟାମୃତ ଦାସ, (୧୫) ଉଦ୍ଧବ ଦାସ । ଏହି ଷୋଳଜଣଙ୍କ ବ୍ୟତୀତ ଅନ୍ୟ ଶିଷ୍ୟ ମଧ୍ୟ ଥାଇ-ପାରନ୍ତି । ଦ୍ୱାରକା ଦାସ ଜଗନ୍ନାଥଙ୍କ ଶିଷ୍ୟ ନୁହନ୍ତି ।

ଏହି ଷୋଡଶ ଶିଷ୍ୟମଣ୍ଡଳୀକୁ ନେଇ ସେ ବଳିଷ୍ଠତମ ଭକ୍ତମଣ୍ଡଳୀ ଗଠନ କରିଥିଲେ । ଏମାନଙ୍କର ମୁଖ୍ୟ କେନ୍ଦ୍ର ହେଲା ନୀଳାଚଳଧାମ । ଯଦ୍ୟପି ଏହି ଷୋଳଜଣ ଶିଷ୍ୟ ଥିଲେ ତଥାପି ଜଗନ୍ନାଥ ଦାସ ମହାପୁରୁଷ କେତେକ ଶିଷ୍ୟଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେହି ପ୍ରିୟ ଛାତ୍ରମାନଙ୍କ ମଧ୍ୟରୁ ୪ ଜଣ ଶିଷ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ । (୧) ରାମଚନ୍ଦ୍ର, (୨) ଜନାର୍ଦ୍ଦନ, (୩) ଗୋପାଳ ଦାସ, (୪) ଜଗନ୍ନାଥ ଦାସ ।

ଏହି ଚାରି ଶିଷ୍ୟଙ୍କୁ ନାନା ଗୁପ୍ତତଥ୍ୟମାନ ଗୁରୁ ଉପଦେଶ ଦେଇଥିବା ପରି ହସ୍ତଲିଖିତ ଗ୍ରନ୍ଥରୁ ଜଣାଯାଏ । କଳିକାଳ ଆଗମନ ସମୟକୁ ଲକ୍ଷ୍ୟକରି ପାଦପଦ୍ମ ସୁଧାନିଧିର ତେର ଅଧ୍ୟାୟରେ କହିଛନ୍ତି :—

ଅତିବଡୀ ଜଗନ୍ନାଥ ଦାସ ଯେ କହନ୍ତି ତତ୍ତ୍ୱ ଚାରି ଶିଷ୍ୟଙ୍କୁ କହିଲେ
ଯୁଗର ରୀତି ବାବୁ ଏ ଦୁଷ୍ଟକାଳ । ୮୦
ଗୁପତ ଭାବେ କହଇ ଶୁଣ ସର୍ବେ ମନ ଦେଇ
ମନେ ଗର୍ବ ନ କରିବ କହୁଛି ଏବେ
ତୁମ୍ଭେ ନିତ୍ୟ ସେବକ । ୮୧ ।
ରାମଚନ୍ଦ୍ର ଜନାର୍ଦ୍ଦନ ଗୋପାଳ ଏ ତିନିଜଣ ପୁଣ୍ୟ ଶିଷ୍ୟ ଜଗନ୍ନାଥ
ଏ ଚାରିଜଣ ଗ୍ରନ୍ଥ ଗୁପତ କରି । ୮୨
ଅତି ବଡ ଖବର ନ କରିବେ ଗ୍ରନ୍ଥ ଗୁପତ
ଅତିବଡ ନାମଟେକ ହୃଦରେ ଧରି
ଗ୍ରନ୍ଥଭାବ କରିବ । ୮୩ ।

ଏହି ଷୋଳ ଶିଷ୍ୟ ମଧ୍ୟରୁ ଚାରିଜଣ ଶିଷ୍ୟ ପ୍ରଧାନ । ଏହି ଚାରି ଶିଷ୍ୟ ମଧ୍ୟରୁ ପୁଣ୍ୟଶିଷ୍ୟ ଜଗନ୍ନାଥ ବୋଲି ସମ୍ବୋଧନ କରି ଥିବାରୁ ଜଗନ୍ନାଥ ଦାସ ନାମକ ଶିଷ୍ୟ ତାଙ୍କର ସର୍ବଶ୍ରେଷ୍ଠ ଶିଷ୍ୟ ବୋଲି ଜଣାଯାଏ । ଶିଷ୍ୟଜଗନ୍ନାଥ,

ବାସ୍ତବିକ ପୁଣ୍ୟଶିଷ୍ୟ ହୋଇଥିବା ଅନୁମେୟ । କାରଣ 'ପାଦପଦ୍ମ ସୁଧାନିଧି' ଗ୍ରନ୍ଥର ପ୍ରଥମ ଅଧ୍ୟାୟ ଶେଷ ପଦରେ ନିଜେ ପ୍ରାର୍ଥନା କରୁଛନ୍ତି ।

ଶ୍ରୀଗୁରୁ ମୋ ଅତିବଡ ଜଗନ୍ନାଥ ଦାସ ଦକ୍ଷ
ଶିଷ୍ୟ ଜଗନ୍ନାଥ ଦାସ ପଶେ ଶରଣ
ଶ୍ରୀଗୁରୁଙ୍କ କୃପା ହେଲି ଗ୍ରନ୍ଥରସ ରସଲୀଳା
ପାଦପଦ୍ମ ସୁଧାନିଧି ଶ୍ରୀକୃଷ୍ଣ ନାମ । ୧୦୦

ଏହି ଶିଷ୍ୟଗଣ ପ୍ରାୟଶଃ ଜ୍ଞାନୀ ଓ ସାଧକ ଥିଲେ । ଜଗନ୍ନାଥ, ରାମଚନ୍ଦ୍ର, ଗୋପାଳ, ଜନାର୍ଦ୍ଦନ, ଏ ଚାରିଜଣ ଥିଲେ ସାଧକ; ବାକି ସାର୍ବଭୌମ ଭଟ୍ଟାଚାର୍ଯ୍ୟ ପ୍ରଭୃତି ଦ୍ୱାଦଶ ଜଣ ଜ୍ଞାନୀ ଥିବା ଅନୁମେୟ । ଏମାନେ ଯଦ୍ୟପି ଜ୍ଞାନୀ ଥିଲେ ତଥାପି ଏମାନଙ୍କୁ ଗ୍ରନ୍ଥ ଲେଖିବାକୁ ଆଦେଶ ହୋଇଛି କି ନାହିଁ ଜଣାଯାଇ ନାହିଁ । ମାତ୍ର ସାଧକ ଶିଷ୍ୟ ଚାରିଜଣଙ୍କୁ ଅତିବଡୀ ସଂପ୍ରଦାୟ ରହସ୍ୟ ଜ୍ଞାନ ସାଧନ ମନ୍ତ୍ରଯନ୍ତ୍ର ସବୁ ଲେଖିବାକୁ ନିର୍ଦ୍ଦେଶ ଦେଇଛନ୍ତି ଗୁରୁ ମହାମହା ପଟ୍ଟଶିଷ ଜଗନ୍ନାଥ ଦାସ । ଯଥା—'ପାଦପଦ୍ମ ସୁଧାନିଧି'ର ଲେଖକ—ଶିଷ୍ୟ ଜଗନ୍ନାଥ ଦାସ, 'ଗୀତାପୁରାଣସାର'ର ଲେଖକ—ରାମଚନ୍ଦ୍ର ଦାସ । ଲୀଳାଗ୍ରନ୍ଥ ବା ଜଗନ୍ନାଥ ଦାସ ଲୀଳା ଗ୍ରନ୍ଥ ଲେଖକ—ଜନାର୍ଦ୍ଦନ ଦାସ । 'ନ ମରନ୍ଦ ସୁଧାନିଧି', 'କୁଣ୍ଡଳୀ ପୁରାଣ' ବା 'ଦ୍ୱାଦଶ କୁଣ୍ଡଳୀ'ର ଲେଖକ—ଗୋପାଳ ଦାସ । †

ଗ୍ରନ୍ଥକାର ଜଗନ୍ନାଥ—ମହାତ୍ମା ଜଗନ୍ନାଥ ଦାସଙ୍କ ଲେଖନୀ ଚାଳନା ଏକ ଅନବଦ୍ୟ ଶୈଳୀର ଅବଲମ୍ବନ କରିଛି । ଏ ଶୈଳୀର ପ୍ରତିଷ୍ଠା ଏତେ ବେଶୀ ଯେ ଶେଷରେ ଏହି ଶୈଳୀ ଗୁଜ୍ଜରୀ ରାଗ ବା 'ଭାଗବତ ବାଣୀ' ନାମରେ ପରିଚିତ । ଭାଗବତ ବାଣୀର ପ୍ରସିଦ୍ଧି ଅନୁଯାୟୀ ଜଗନ୍ନାଥ ଦାସ ବୋଲି ସାଧାରଣ ଲୋକଙ୍କ ଧାରଣା । ଓଡ଼ିଆ ଭାଷାର ପଣ୍ଡିତମାନେ ତାଙ୍କର ଅନେକ ଗ୍ରନ୍ଥ ଥିବାର ଅନୁମାନ କରନ୍ତି । ସେଥିମଧ୍ୟରୁ କେତେକ ପ୍ରକାଶିତ, କେତେକ ଅପ୍ରକାଶିତ, କେତେକ କୀଟଭୂକ୍ତ ଓ କେତେକ ନଦୀ ଓ ଅଗ୍ନିରେ ଆତ୍ମସାତ ଉକ୍ତି ବେଶି ତା'ର କଳନା କରାଯାଇ ନପାରେ ।

ଅଚ୍ୟୁତାନନ୍ଦ ମହାପୁରୁଷ ଜଗନ୍ନାଥଙ୍କ କବିତାକୁ 'ସର୍ବବାଦୀସମ୍ମତ' କବିତା ବୋଲି ଉଲ୍ଲେଖ କରିଛନ୍ତି, ଯଥା—

"ଜଗନ୍ନାଥ ଦାସ କବିତା ଯେଣୁ
ସର୍ବବାଦୀମତ ହୋଇଛି ତେଣୁ"

କେବଳ କବିତା ବ୍ୟାମୋହିତ ବାଣୀକୁ ପ୍ରଶଂସା କରିଛନ୍ତି ତା ନୁହଁ ଭାବ ଭାଷା ଶୈଳୀ ଯୁକ୍ତି ଦର୍ଶନ ଲୋକନୀତି ରାଜନୀତି ଧର୍ମନୀତି ସଦାଚାର ଗାମ୍ଭୀର୍ଯ୍ୟ ଓ ରଚନା ବୈଚିତ୍ର୍ୟକୁ ଦେଖି ଏପରି କହିଛନ୍ତି ।

---

† ଜଗନ୍ନାଥ ଦାସ ରହସ୍ୟ ଅବଗତି ପାଇଁ 'ପାଦପଦ୍ମ ସୁଧାନିଧି', ଗୀତାପୁରାଣ ସାର, ଜଗନ୍ନାଥ ଦାସ ଲୀଳାଗ୍ରନ୍ଥ, ନାମରତ୍ନ ସୁଧାନିଧି ଏବଂ ଦ୍ୱାଦଶ କୁଣ୍ଡଳୀ ନାମକ ପୁସ୍ତକ ଜଗନ୍ନାଥ ଦାସଙ୍କ ପ୍ରିୟଶିଷ୍ୟଙ୍କ ଲିଖିତ ହେତୁ ସେଥିରୁ ଜଗନ୍ନାଥ ଦାସଙ୍କ ଜୀବନକାଳର ସମସ୍ତ ରହସ୍ୟ ଉଦ୍‌ଘାଟିତ ହୋଇ ପାରିବ । ପାଠକଙ୍କୁ ଅନୁରୋଧ ଏ ଗ୍ରନ୍ଥ ସନ୍ଧାନ ପାଇଲେ ଆମ୍ଭଙ୍କୁ ଜଣାଇବେ ।

କେବଳ ଏତିକି ନୁହେଁ ନିଜେ ଜଗନ୍ନାଥ ଦାସ ତତ୍ତ୍ୱ ଜ୍ଞାନ ବିଶ୍ଳେଷଣ କରିବାକୁ ଯାଇ ସମସ୍ତ ତତ୍ତ୍ୱ ଖୋଲି ଦେଇଛନ୍ତି । ତେଣୁ ସେ ନିଜେ ମଧ୍ୟ ପଞ୍ଚସଖାଙ୍କ ନିକଟରେ ଦୋଷ ସ୍ୱୀକାର କରିଛନ୍ତି । ନିଜେ ମଧ୍ୟ ସେ କହୁଛନ୍ତି—

"ସନ୍ଥ ମହନ୍ତଙ୍କ ଗୁପତ ଧନ ଏ ଗଣ୍ଠି କରି ଏହା ରଖନ୍ତି
ଜଗନ୍ନାଥ ଦାସ ପାଇଲା ମାତ୍ରକେ ବାଟେ ବୁଣିଲେ ତୁଚ୍ଛମତି ।"
(ଜଗନ୍ନାଥ ଦାସ ବୋଲି)

ଏହିଥିରୁ ସହଜରେ ଅବବୋଧ ହୁଏ ଯେ ତତ୍ତ୍ୱ ଓ ତଥ୍ୟ ପରିବେଷଣ କରିବାକୁ ଜଗନ୍ନାଥ ଦାସ ଅତ୍ୟନ୍ତ ବ୍ୟାକୁଳ ହେଉଥିଲେ । ତେଣୁ ତାଙ୍କରି ଲେଖନୀ ସର୍ବଦା ଚଳଚଞ୍ଚଳ ଥିଲା ମାତ୍ର ଜଗନ୍ନାଥ ବୃଦ୍ଧ ବେଳକୁ ଆଉ ନିଜେ ନ ଲେଖି ନିଜ ଶିଷ୍ୟମାନଙ୍କୁ ଲେଖିବାକୁ ନିର୍ଦ୍ଦେଶ ଦେଉଥିଲେ । ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ପରି ଜଗନ୍ନାଥ ଦାସ ମଧ୍ୟ ଅସଂଖ୍ୟ ଗ୍ରନ୍ଥ ଲେଖି ଶିଷ୍ୟ ଓ ଭକ୍ତମାନଙ୍କ ଗୃହରେ ଥୋଇ ଯାଇଛନ୍ତି । ସାରସ୍ୱତ ସଂହିତାରେ ନିଜେ ଜଗନ୍ନାଥ ଦାସ ନିଜର ଗ୍ରନ୍ଥ ସଂଖ୍ୟା ତାର ରକ୍ଷାସ୍ଥାନ ଓ ପରଜନ୍ମ ସମ୍ବନ୍ଧରେ ଅନନ୍ତ ଯଶୋବନ୍ତ ବଳବନ୍ତଙ୍କ ସମକ୍ଷରେ ଅଚ୍ୟୁତାନନ୍ଦ ଗାଦୀ ବଉଳ ମୂଳେ କହୁଛନ୍ତି, ଯେ—

କହେ ଜଗନ୍ନାଥ ଶୁଣ ବଳରାମ କି ଲେଖିବୁ ଲେଖାବାବୁ
ଆର ଜନ୍ମରେ ଯେ ପୁରାଣ ଲେଖିବୁ ସଖାଙ୍କକୁ ଲେଖିବୁ ।

ମୋର ବଉଣାଖା ଜନ୍ମ ଯେ ଲଭିବ ବ୍ରାହ୍ମଣର ଘରେ ଯାଇ
ପିପ୍‌ପଳ ଗ୍ରାମରେ ପୁରାଣ ଥାପିବ ଶ୍ରୀନୀଳଚକ୍ରକୁ ଧ୍ୟାୟୀ ।

ବାରଶ ପୁରାଣ ତେସ୍ତରୀ ଆଖ୍ୟାନ ପରିଚ୍ଛେଦ ବୟାଳିଶ
ଜଗନ୍ନାଥ ଦାସ ଖବରେ ଭଣିଲେ ବସାଣ ଉଣତିରିଶ ।
(ପଞ୍ଚଦଶ ପରାର୍ଦ୍ଧ ପଞ୍ଚସଖା)

ଅର୍ଥାତ୍ ଜଗନ୍ନାଥ ଦାସ କହୁଛନ୍ତି ଓ ବଳରାମ ଦାସ ଲେଖୁଛନ୍ତି ଜଗନ୍ନାଥ ଦାସ କୃତ ଗ୍ରନ୍ଥ ମଧ୍ୟରୁ ବାରଶହ ପୁରାଣ ଗ୍ରନ୍ଥ ବା ପୁରାଣପ୍ରଧାନ ଗ୍ରନ୍ଥ । ତେସ୍ତରୀଟି ଆଖ୍ୟାନ ଗ୍ରନ୍ଥ, ପରିଚ୍ଛେଦ ଗ୍ରନ୍ଥ ବୟାଳିଶ ଏବଂ ବସାଣ (ଯନ୍ତ୍ରମାଳା) ୧୯ ଗୋଟି ଲେଖିଛନ୍ତି ।

| | | |
|---|---|---|
| ପୁରାଣ ଗ୍ରନ୍ଥ | ୧୨୦୦ | ଶହ |
| ଆଖ୍ୟାନଗ୍ରନ୍ଥ | ୭୩ | ଟି |
| ପରିଚ୍ଛେଦ ଗ୍ରନ୍ଥ | ୪୨ | ଟି |
| ବସାଣ ଗ୍ରନ୍ଥ | ୧୯ | ଟି |
| | ୧୩୩୪ | |

ସେ ମୋଟ କରିଥିବା ୧୩୩୪ଟି ଗ୍ରନ୍ଥ ଅଛି ବୋଲି ସାରସ୍ୱତ ସଂହିତା ବା 'ପରାର୍ଦ୍ଧ' ଗ୍ରନ୍ଥରୁ ମିଳୁଛି । ଏହିପରି ପଞ୍ଚସଖାମାନେ ସମସ୍ତେ ଗ୍ରନ୍ଥସଂଖ୍ୟା ସ୍ଥାନକାଳମାନ ପାତ୍ର ପ୍ରଭୃତି ସବୁ ଲେଖିଛନ୍ତି । ସାରସ୍ୱତ ସଂହିତା ପଞ୍ଚସଖାଙ୍କ

ମିଳିତ କୃତି । ଏଥିରେ ଶିଷ୍ୟପ୍ରଶିଷ୍ୟମାନଙ୍କର ସ୍ଥାନ ନିରୂପଣାଦି ମଧ୍ୟ ଅନ୍ତର୍ଭୁକ୍ତ । ଜଗନ୍ନାଥ ଦାସ ଅନ୍ୟାନ୍ୟ ଗ୍ରନ୍ଥ ମାନଙ୍କରେ କଣ ଲେଖିଛନ୍ତି ଜାଣିବାର ଉପାୟ ନାହିଁ । ସମସ୍ତ ଗ୍ରନ୍ଥ ଅଧ୍ୟୟନ କଲେ କାହାପରେ କଣ ଲେଖାଯାଇଛି ତା'ର ସନ୍ଧାନ ମିଳିପାରନ୍ତା । ପଞ୍ଚସଖାମାନେ ସଂସ୍କୃତ ଓଡ଼ିଆ ଉଭୟ ଭାଷାରେ ଗ୍ରନ୍ଥ ଲେଖିଛନ୍ତି । ତେଣୁ ମହାପୁରୁଷ ଜଗନ୍ନାଥ ଦାସ କୃତ ଗ୍ରନ୍ଥର ଉପଲବ୍ଧ ସଂଖ୍ୟା ନିମ୍ନରେ ଉଦ୍ଧାର କରଯାଉଛି । ଏଥିମଧ୍ୟରୁ କେତେ ପ୍ରକାଶିତ, କେତେକ ସଂରକ୍ଷଣାଗାର ଅନ୍ତର୍ଗତ ଏବଂ କେତେକ ମଦୀୟ ହସ୍ତଗତ, ଯଥା—

**ସଂସ୍କୃତ ଗ୍ରନ୍ଥ—**

୧ କୃଷ୍ଣ ଭକ୍ତି କଳ୍ପଲତା
୨ ନିତ୍ୟଗୁପ୍ତ ଚିନ୍ତାମଣି (ନିତ୍ୟଗୁପ୍ତମାଳା)
୩ ଉପାସନା ଶତକଂ
୪ ନୀଳାଦ୍ରି ଶତକଂ
୫ ପ୍ରେମସୁଧାନିଧି
୬ ନିତ୍ୟାଚାର
୭ ଜଗନ୍ନାଥ ଚରିତାମୃତ -ଧି ସରଣୀ
୮ ସଦୀକ୍ଷୋପାସନ ବିଧିଃ
୯ ଶ୍ରୀରାଧା ରହମଞ୍ଜରୀ
୧୦ ଜଗନ୍ନାଥ କାରିକା
୧୧ କରଣୀ ସଂହିତା
୧୨ ମନ୍ତ୍ର ପ୍ରଣାଳୀ
୧୩ ଧ୍ରୁବଚେ ଧନଂ
୧୪ ଉଦ୍ଧବବୋଧନଂ
୧୫ ପୂର୍ଣ୍ଣମୃତ ସେଚନ୍ଦ୍ରିକା

x x x

**ଓଡ଼ିଆ ଗ୍ରନ୍ଥ—**

୧ ଶ୍ରୀମଦ୍‌ଭାଗବତ
୨ ମହାଭାରତ
୩ ଗୁପ୍ତ ଭାଗବତ
୪ ଦାରୁବ୍ରହ୍ମଗୀତା
୫ ଦୀକ୍ଷାସମ୍ବାଦ
୬ ବୋଲେ ହୁଁ ତି
୭ ଅର୍ଥକୋଇଲି
୮ ଗଜସ୍ତୁତି
୯ ଗଜ ନିସ୍ତାରଣ
୧୦ ମୃଗୁଣୀସ୍ତୁତି
୧୧ ତୁଳାଭିଣା
୧୨ ଇତିହାସ ପୁରାଣ
୧୩ ପାଷଣ୍ଡ ଦଳନ
୧୪ ମନଃଶିକ୍ଷା
୧୫ ପଦ୍ମକଳ୍ପଟୀକା
୧୬ ସସ୍ତଙ୍କ ବର୍ଣ୍ଣନା
୧୭ ଚଉପଦୀ
୧୮ ଶୈବଭାଗବତ
୧୯ ଗୁଣ୍ଡିଚାବିଜେ
୨୦ ଧ୍ରୁବଚରିତ
୨୧ ବ୍ରହ୍ମାଣ୍ଡଭୂଗୋଳ
୨୨ ପ୍ରମୋଦ ଚିନ୍ତାମଣି
୨୩ କଳୀୟ ଦଳନ
୨୪ ଷୋଳ ଚଉପଦୀ
୨୫ ପାହାନ୍ତି ଅବକାଶ
୨୬ ଇନ୍ଦ୍ରଗୋବିନ୍ଦ ଭବିଷ୍ୟ ମାଳା
୨୭ ଜ୍ଞାନସାଗର ଗୀତା
୨୮ ମାଳା ନିର୍ଣ୍ଣୟ
୨୯ ଭବିଷ୍ୟତ ମାଳିକା
୩୦ ଫୁଲତୋଳା
୩୧ ପଣ ପର୍ବ
୩୨ ଗୋପଭାଷାର ଅର୍ଥ
୩୩ ଅକ୍ରୁର ବୋଲି
୩୪ ଭକ୍ତି ଚନ୍ଦ୍ରିକା
୩୫ ମନ୍ମଥ ଚନ୍ଦ୍ରିକା
୩୬ ଗଜ ଉଦ୍ଧାରଣ
୩୭ ଅର୍ଥ କୋଇଲି
୩୮ କଳି ମାଳିକା
୩୯ କ୍ଷୁରାବଳୀ (ଶିବଭ୍ରମର) ବିଷ୍ଣୁଭ୍ରମର ସଂଗ୍ରାମ
୪୦ ଏକାଦଶୀ ବ୍ରତ
୪୧ ପଞ୍ଚଭୂତ ଗୀତା
୪୨ ଗୁଣ୍ଡିଚା ବିଜେ
୪୩ ଅଳଙ୍କାର ବୋଲି
୪୪ ମନ୍ତ୍ର ପ୍ରଣାଳୀ
୪୫ ଛାଟ
୪୬ ଗୋଲୋକଯାତ୍ରେଶ୍ବର
୪୭ ଭଜନ ମାଳା
୪୮ ପକ୍ଷୀ ଗୀତା
୪୯ ଗରୁଡ଼ ଗୀତା
୫୦ ଗୁପ୍ତ ଭବିଷ୍ୟାନ୍ତ
୫୧ କ୍ଷେତ୍ରନାମ ଗୀତା
୫୨ ଜଗନ୍ନାଥଦାସ ଚଉତିଶା
୫୩ ସଦଚକ୍ରମା ଚକଡ଼ା ଲଗାଣ
୫୪ ପରାର୍ଦ୍ଧଯାଚଦ୍ଵତସଂହିତା
୫୫ ରହସ୍ୟ ଚଉତିଶା
୫୬ ଦୂତୀବୋଧ
୫୭ ଏକାକ୍ଷର ତତ୍ତ୍ଵ ପ୍ରଶ୍ନ
୫୮ ପଦ୍ମବନରସ
୫୯ ଉଦ୍ଧବ ଚନ୍ଦ୍ରିକା
୬୦ ଛୋଟ ବାଖର

ଇତ୍ୟାଦି ଗ୍ରନ୍ଥ ଲୋକଲୋଚନ ଗୋଚରକୁ ଆସିଛି । ଏହି ଗ୍ରନ୍ଥୋଦ୍ଧାର କାର୍ଯ୍ୟରେ ଯେଉଁମାନେ ଅପ୍ରାଣ ଉଦ୍ୟମ କରୁଛନ୍ତି ସେମାନେ ଏ ଜାତିର କୃତୀ ସନ୍ତାନ—ଏଥିରେ ସଂଦେହ ନାହିଁ । ଜଗନ୍ନାଥ ଦାସଙ୍କ ବିଷୟରେ ଯେଉଁ ଗ୍ରନ୍ଥୋଦ୍ଧାର କରାଯାଇଛି ତାହା ସମୁଦ୍ରକୁ ଶଙ୍ଖେମାତ୍ର । ଏଣୁ ଏହାର ଅନୁସନ୍ଧାନ ପ୍ରବଳବେଗରେ ହେବା ଏକାନ୍ତ ଆବଶ୍ୟକ । ଏତାଦୃଶ ଗ୍ରନ୍ଥମାନ ନିର୍ମାଣ କରି ଯୁଗଜନ୍ମା ସାଧକପ୍ରବର ଜଗନ୍ନାଥ ତତ୍ତ୍ୱ ବିଶାରଦ ଜଗନ୍ନାଥ ଦାସ ଅଶୀତ୍ୟାଧିକବର୍ଷ ଜୀବିତ ଥିବାର ଅନୁମାନ କରାଯାଉଛି । ଜୀବନର ଶେଷଭାଗରେ ଶିଷ୍ୟମାନଙ୍କୁ ଉପଦେଶମାନ ପ୍ରଦାନ କରି ଧର୍ମତତ୍ତ୍ୱକୁ ଗୁପ୍ତ କରିବାକୁ ପରାମର୍ଶ ଦେଇଛନ୍ତି । ନିଜର ପ୍ରିୟଭକ୍ତ କିଏ ବୋଲି ପ୍ରଶ୍ନର ଉତ୍ତର ଦେଇ ଚକଡ଼ା ଲଗାଣରେ କହିଛନ୍ତି—

ନାମତତ୍ତ୍ୱ ଜାଣି ଜୀବବ୍ରହ୍ମଜ୍ଞାନୀ ସପ୍ତପଞ୍ଚାତ୍ରିକ ଜାଣେ<br>
ସେ ମୋର ଭକତ ଏ ଗ୍ରନ୍ଥ ଚିହ୍ନିବେ ତିନି ସହସ୍ରେ ସେ ଜଣେ ।

ନାମତତ୍ତ୍ୱ କଣ ତାକୁ ଯେ ଜାଣୁଥିବ ବ୍ରହ୍ମଜୀବରହସ୍ୟକୁ ଯେ ଜାଣିଥିବ ଏବଂ ସପ୍ତ ପଞ୍ଚ ତ୍ରିକ ରହସ୍ୟକୁ ଯେ ସମ୍ୟକ୍ ଅବଗତ ହୋଇଥିବ ସେ ମୋର ଭକ୍ତ ବୋଲି କହିଛନ୍ତି । ଶତ ଶତ ଶିଷ୍ୟ ପ୍ରଶିଷ୍ୟ ମଣ୍ଡଳୀ ମଧ୍ୟରେ କଠୋର ଉପଦେଶ ନଦେଇ କୃତକର୍ମର ଫଳକୁ ଚେତାଇ ଦେଇ ଶିଷ୍ୟଙ୍କୁ ପ୍ରକାରାନ୍ତରରେ ଅକର୍ମରୁ ବାରଣ କରିଛନ୍ତି ।

ପରଦାର କୃତେ ନାନ୍ଧଃ, ପରଦ୍ରବ୍ୟେ ଦରିଦ୍ରତା,<br>
ସ୍ୱର୍ଣ୍ଣ ସ୍ତେୟୀ ଭବେତ୍ କୁଷ୍ଠୀ × × ×

ପୁଣି କହିଛନ୍ତି ଋଣ ନେଇ ନ ଫେରାଇଲେ ସ୍ତ୍ରୀ ମରେ । କ୍ଷୁଦ୍ର କ୍ଷୁଦ୍ର ପଦ୍ମାର ଅପୁତ୍ରିକ ହୁଏ । ବ୍ରହ୍ମଶାପରେ ବଂଶନାଶ ଘଟେ । କନ୍ୟା ବିକିଲେ ନର୍କଗାମୀ ହୁଏ । ନାମ ନିନ୍ଦାକଲେ କାଳ ହୁଏ, ବେଦ ନିନ୍ଦାରେ ରୋଗୀ ହୁଏ ।

ପୁନର୍ବାର କହିଛନ୍ତି—

"ବିଷ୍ଣୁ ନିନ୍ଦା ଭବେନ୍ମୂର୍ଖୋ ଗୁରୁ ନିନ୍ଦାଚକୁବ୍ଜକମ୍<br>
ଶିବ ନିନ୍ଦା ଭବେତ୍ ଖଣ୍ଡି କୁଷ୍ଠ ତ୍ୱଂ ପଣ୍ଡୁ ନନ୍ଦନ ।"

ବିଷ୍ଣୁ ନିନ୍ଦାରେ ମୂର୍ଖ, ଗୁରୁ ନିନ୍ଦାରେ କୁଜା, ଶିବ ନିନ୍ଦାକଲେ ଖଣ୍ଡିଆ କୁଷ୍ଠରୋଗୀ ହୁଅନ୍ତି । ଏହିପରି କହି ସେ ଭାରତର ବିଭିନ୍ନ ପ୍ରାନ୍ତର ପଦବ୍ରଜରେ ବୁଲି ବହୁ ବିଜ୍ଞାନଗର୍ବୀ ପଣ୍ଡିତଙ୍କୁ ଯୁକ୍ତିବଳରେ ପରାସ୍ତକରି ଶେଷରେ ବହୁକାଳ ସାଧନ ଫଳ ସାତ ଲହରି ମଠରେ ଯୋଗଧ୍ୟାନ କରି କାଳ ଯାପନ କରୁ କରୁ ଦେହତ୍ୟାଗ କରିବା ବାସନା ମନରେ ରଖି ଶିଷ୍ୟଙ୍କୁ ସମବେତ ହେବାକୁ ଆଦେଶ ଦେଲେ । ଜଗନ୍ନାଥ ଦାସ ନିଜର ଶରୀର ତ୍ୟାଗ ପୂର୍ବରୁ ଶ୍ରେଷ୍ଠ ଶିଷ୍ୟକୁ ପରିଚୟ କରାଇ ଦେବାକୁ ଇଚ୍ଛାକରି ସେ କହିଲେ, ମୋର କଠାଉ ବଡ ଓଡ଼ିଆ ମଠରେ ଅଛି ତୁମ ଭିତରୁ କିଏ ଏଠାକୁ ମାଡ଼ି ଆସି ପାରିବ ? ସମସ୍ତେ ମନାକଲେ । ହରିଦାସ ନାମକ ଜଣେ ଶିଷ୍ୟ ଗୁରୁ କଠାଉ ମାଡ଼ି ଜଗନ୍ନାଥ ଦାସଙ୍କ ପାଖକୁ ଅନ୍ୟମାନଙ୍କ ବାରଣ ସତ୍ତ୍ୱେ ଚାଲିଗଲା । କ୍ରୁଦ୍ଧ ହୋଇ

ତାଙ୍କର ପ୍ରଥମ ଓ ପ୍ରଧାନଶିଷ୍ୟ ଅଭିଶାପ ଦେଲେ ତୋର ଗର୍ବ ଗୁରୁ ପାଦୁକା ମାଡ଼ି ଆସିଲୁ ସେ ଗୋଡ ତୋର କୁଷ୍ଠ ରୋଗ ହେଉ । ସଙ୍ଗେ ସଙ୍ଗେ ଗୋଡରେ କୁଷ୍ଠ ରୋଗ ହେଲା । ପରେ ଗୁରୁ ଆଶ୍ୱାସନା ଦେଲେ ଏବଂ ସେହି ପାଦୁକାକୁ ଧୋଇ ସେହି ପାଦୁକାପାଣି ପିଇବାକୁ କହିଲେ । ଗୁରୁଙ୍କ ଆଶ୍ୱାସନା ଓ ଆଶୀର୍ବାଦରୁ ପାଦୁକାଜଳ ପାନରେ ସେ ରୋଗମୁକ୍ତ ହେଲା । ଗୁରୁ ଆଦେଶକଲେ ତୁମ୍ଭେ ମୋର ପ୍ରଧାନ ଶିଷ୍ୟ । ତୁମ୍ଭେ ହେଲ ବିନ୍ଦୁ ପୁତ୍ର । ତୁମେ ଏହି ପାଦୁକା ରଖିବ । ଏହି ଅଧିକାର ତୁମ୍ଭଙ୍କୁ ଦିଆଗଲା କହି, ସେ ଗାଦୀରେ ସେ ପାଦୁକା ପୂଜା କରିବାର ବ୍ୟବସ୍ଥା କରିଗଲେ । ଶିଷ୍ୟଗଣ ଅଦ୍ୟାପି ଅଧିକାରୀ ଆଖ୍ୟା ବହନ କରନ୍ତି ।

ଶେଷଦିନ ସମାଗତ ଜାଣି ଶ୍ରେଷ୍ଠ ଶିଷ୍ୟଙ୍କୁ ସଂପ୍ରଦାୟ ପ୍ରତିଷ୍ଠା ଓ ତାର ଦାୟିତ୍ୱ ଭାର ଦେଇ ବୈଷ୍ଣବଜନୋଚିତ ମାଳାତିଳକ ବିଭୂଷିତ ହୋଇ ଶୁଭ୍ର ବସ୍ତ୍ର ପରିଧାନପୂର୍ବକ ଦେବାଧିଦେବ ଜଗନ୍ନାଥ ଦର୍ଶନ କୌତୂହଳ ମାନସରେ ଶ୍ରୀମନ୍ଦିରରେ ଉପସ୍ଥିତ ହୋଇ ସ୍ତୁତିସ୍ତବାଦି କରି ଶେଷରେ ଭଗବତ୍ ପଦାରବିନ୍ଦରେ ମନନିମଜ୍ଜମାନ କରି ଯୋଗ ସମାଧିରେ ଧ୍ୟାନସ୍ଥ ହେଲେ । ସେହି ଯୋଗୀନ୍ଦ୍ର ଶ୍ରେଷ୍ଠ ଜଗନ୍ନାଥ ବିଦ୍ୟୁତ୍ ବେଗରେ ଦିବ୍ୟରତ୍ନ ସିଂହାସନର ଅପୂର୍ବ ଜ୍ୟୋତିଃସହ ସମ୍ମିଶ୍ରିତ ହୋଇଯାଇ ଥିଲେ । ସେତେବେଳକୁ ତାଙ୍କୁ ଷାଠିଏ ବର୍ଷ ବୟସ ହୋଇଥିଲା ଏବଂ ସେଦିନ ଥିଲା ମାଘ ମାସ ଶୁକ୍ଳପକ୍ଷ ପବିତ୍ର ତିଳ ସପ୍ତମୀ । ତଦୀୟ ମରଶରୀର ଅଦୃଶ୍ୟ ହୋଇ ଯାଇଥିଲେ ମଧ୍ୟ ଭକ୍ତ ଓ ସାଧକମାନଙ୍କ ସମକ୍ଷରେ ସ୍ୱଶରୀର ଦେଖା ଦେବାର ଆର୍ଷ ବଚନ ଅଦ୍ୟାପି ଶ୍ରୁତିଗୋଚର ହୁଏ ।

ଉତ୍କଳର ଜାତୀୟ ଜୀବନର ସଂରକ୍ଷକ, ସାର୍ବଜନୀନଭାଷା ବ୍ୟବହାରକାରୀ, ଭାଗବତବାଣୀ—ଛନ୍ଦର ସ୍ରଷ୍ଟା, ବ୍ୟାସକଳ୍ପ, ଭାଗବତକାର, ଜଗନ୍ନାଥ ଦାସ ଅଦ୍ୟାପି ଏ ଜାତିର ଚିରସ୍ମରଣୀୟ ହୋଇ ରହିଛନ୍ତି । ଓଡ଼ିଆ ପୁଅର ବିପଦ ଆପଦର ସାଥୀ ଉପଦେଷ୍ଟାର ପ୍ରତୀକ ରୂପେ ଭାଗବତର ସେହି ଅମୃତମୟ ବାଣୀ ହୃଦୟକଣ୍ଠ ଭେଦକରି ପ୍ରତିଧ୍ୱନିତ ହୁଏ ।

କର୍ମ କଷଣ ସହି ଦୁଃଖ । କଦାପି ନୋହିବ ବିମୁଖ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ॥

ଶେଷରେ ଭକ୍ତ୍ୟର୍ଘ୍ୟ ଅର୍ପଣପୂର୍ବକ ସମକଣ୍ଠରେ ସେହି ମହାତ୍ମାଙ୍କ ପଦରେ ପ୍ରଣତି ଜ୍ଞାପନ କରିବା । ଜଗନ୍ନାଥ ମହଂ ବନ୍ଦେ ଜଗନ୍ନାଥସ୍ୟ ସାଧକଂ
ସଖା ପଞ୍ଚଗତଂ ଚୈବ ନୀଳାଚଳ ବିରାଜିତମ୍ ।

# ଭାଗବତ ସପ୍ତାହ

## ପ୍ରଫେସର ଡକ୍ଟର କେଶବଚନ୍ଦ୍ର ସାହୁ

ପରମ ମଙ୍ଗଳ ଏ ବାଣୀ ଜୀବ ନିସ୍ତରେ ଯାହା ଶୁଣି ।।
ଅମୃତ ନିନ୍ଦେ ସ୍ୱାଦୁପଣେ, ପିବ ସୁଜନେ ଅନୁକ୍ଷଣେ ।।

ଯେଉଁମାନେ ସୁଜନ, ଯେଉଁମାନେ ରସିକ, ଯେଉଁମାନେ ଭାବୁକ ସେମାନେ ଶ୍ରୀମଦ୍‌-ଭାଗବତାମୃତ ପାନକରନ୍ତି । ସନକାଦି ମୁନିମାନେ କହିଛନ୍ତି ଯେ, ଭାଗବତ କଥା ଶ୍ରବଣ ଦ୍ୱାରା, ସପ୍ତାହ ଯଜ୍ଞଦ୍ୱାରା ଯେଉଁ ମୂଲ୍ୟବାନ ଫଳ ସଞ୍ଚିତ ହୁଏ ତାହା ଜନ୍ମ ଜରା-ମୃତ୍ୟୁରୁ ରକ୍ଷାକରେ । ଲୋକମାନେ, ସାଧୁସନ୍ଥମାନେ ଦୀର୍ଘକାଳ ବାୟୁ, ଜଳ, ପତ୍ର ଖାଇ ଶରୀର ଶୁଷ୍କକରି ଘୋର ତପସ୍ୟା ଓ ଯୋଗାଭ୍ୟାସ ଦ୍ୱାରା ମୋକ୍ଷଗତି ପାଆନ୍ତି ନାହିଁ, ସପ୍ତାହ ଶ୍ରବଣ ଦ୍ୱାରା ତାହା ସେମାନେ ପାଇଥାନ୍ତି ।

ଏଣୁ କୁସଙ୍ଗ ଦୂରକରି, ହୃଦେ ମୋ ଭାବ ସଦା ଧରି ।।
ଆମ୍ଭର ହିତ ନିତ୍ୟ କର, ହସି ବୋଲନ୍ତି ଦାମୋଦର ।।

ଏହାହିଁ ଭଗବାନଙ୍କର ବାଣୀ, ଯାହାର ବିକାଶ ପ୍ରକାଶ ହୋଇଛି ଶ୍ରୀମଦ୍‌ ଭାଗବତରେ । ଏହାର କଥା କୀର୍ତ୍ତନ ସତ୍‌ପୁରୁଷମାନଙ୍କର ସତ୍‌ ସମାଗମ କରାଏ, ସଙ୍ଗଲାଭ କରାଏ, ସତସଙ୍ଗ ଅଟେ ଯାହାକି ସର୍ବଶେଷ ପ୍ରୟୋଜନ ଜୀବନର । ଏହାହିଁ ଗଢ଼ିତୋଳେ ମନୁଷ୍ୟଙ୍କୁ ବିଚକ୍ଷଣ କରି ।

ବେଦରେ ଶବ୍ଦ ପ୍ରଧାନ, ଭାଗବତରେ ଭାବ ପ୍ରଧାନ । ଭାଗବତ ବେଦର ସାର ଉପରେ ଆଧାରିତ ।

"ନିଗମ କଳ୍ପଦ୍ରୁମେ ଜାତ, ଫଳ ଅଟଇ ଭାଗବତ ।"

—ଏହି ଭାବକୁ ଆଶ୍ରୟ କରି ତଥାକଥିତ ସର୍ବଧର୍ମର ସମନ୍ୱୟ ପ୍ରତିଷ୍ଠାକରି ସାମାଜିକ ଜଘନ୍ୟତାର ବିଲୋପସାଧନ କରିଛି ଶ୍ରୀମଦ୍‌ ଭାଗବତ; ପ୍ରଚାର କରିଛି ଭାଗବତ ସପ୍ତାହ । ଏହା ସାମୂହିକ ବିକାଶ, ସୁସଂସ୍କୃତ ସମାଜ, ସାମୂହିକ ଚିତ୍ତ ନିର୍ମାଣ ଓ ସାମୂହିକ ଚିତ୍ତଶୁଦ୍ଧି କରିପାରିଛି ।

### ଏହି ମହାନ ଗ୍ରନ୍ଥ ଓ ଏହାର ଉଦ୍ଭାବିତ ଉପାୟ—

ଏହି ଭଗବତୀୟ ଭକ୍ତିବାଦ ଗଢ଼ିତୋଳେ ଅହିଂସକ ଧର୍ମ, ପ୍ରେମ ଧର୍ମ । ଭଗବତ ଭକ୍ତି ହିଁ ଏହାର ବିଶେଷତ୍ୱ । ଭଗବାନଙ୍କ ନିକଟରେ ନିଜକୁ ସମର୍ପଣ କରିବା ହିଁ ଏହାର ଗୁରୁତ୍ୱ । ଏହାର ସାପ୍ତାହିକ ଅନୁଷ୍ଠାନ ପ୍ରସାର କରିଛି

ଏହାର ମହତ୍ତ୍ୱ । ଏ ଭାଗବତ ସପ୍ତାହ ଆମକୁ ଶିଖାଏ ଭଗବାନଙ୍କୁ ଭକ୍ତି କରିବା, ନିଜକୁ ସମର୍ପଣ କରିବା, ନିଜର ସବୁକାର୍ମକୁ ଉତ୍ସର୍ଗ କରିବା, ହେବା ନିର୍ଭୀକ, ଯଦି କେବେ ଭୟ ଆସେ ତେବେ ବୁଝିବାକୁ ହେବ ଯେ, ତାର ଭକ୍ତି ଓ ଶ୍ରଦ୍ଧାରେ ଅଛି ଜଡ଼ତା, ନାହିଁ ଦୃଢ଼ତା । ସେ ଭକ୍ତି ଜୀବନ୍ତ ନୁହେଁ । "ଭଗବତ୍ ଭକ୍ତି ଆମକୁ କରିବ ନିର୍ଭୀକ, ଶକ୍ତିଶାଳୀ, ତେଜସ୍ୱୀ, ଆୟୁଷ୍ମାନ୍ । ଭଗବତ୍ ଭକ୍ତି କରିବ ଆମର ଚିତ୍ତଶୁଦ୍ଧି, ପବିତ୍ରଆତ୍ମା ହେବ ଉନ୍ନତ, ଶୁଦ୍ଧ, ପୂତ, ମିଳିବ ସ୍ୱର୍ଗୀୟ ଆନନ୍ଦ, ସତ୍-ଚିତ୍-ଆନନ୍ଦ" ଏହା ଅନୁଭୂତିର କଥା, ଉପଲବ୍ଧିର କଥା ।

ଆମେ ସବୁ ଯେ ପରମାତ୍ମାଙ୍କର ସନ୍ତାନ, ଏହି ଭାବନା ଆମ ବୁଦ୍ଧିକୁ ବ୍ୟାପକ କରେ, ସମଗ୍ର ବିଶ୍ୱସହିତ ମିଳାଇ ଦିଏ । ଆସେ ବିଶ୍ୱାତ୍ମନ ଭାବ । "ଏହି ବିଶ୍ୱାସ ଭାବରୁ ଜନ୍ମେ ଭଗବତ୍ ଭକ୍ତି ଯାହା ମଣିଷକୁ ଦେହଠାରୁ ତାର ଆତ୍ମାକୁ ଅଲଗା କରିଦିଏ । ଏହି ଆତ୍ମପ୍ରାପ୍ତିରେ ଭକ୍ତିଅପ୍ଲୁତ ହୁଏ ଜୀବନ, ଅଲୌକିତ ହୁଏ ଜୀବନ, ଅଧିକାରୀ କରାଏ ସ୍ଥିତପ୍ରଜ୍ଞର । ଆସକ୍ତି, ସଂପୃକ୍ତି ବନ୍ଧନ, ସଂକୀର୍ଣ୍ଣତା, ସସୀମତା ଦୂର କରାଏ । ସ୍ୱୟଂସଂପୂର୍ଣ୍ଣତା ଅନୁଭବ କରାଏ । ଏହାହିଁ ଭଗବତ୍ ପ୍ରାପ୍ତିର ସରଳ ଉପାୟ । ଭଗବାନ କହିଛନ୍ତି ଯେ ସେ ନିଷ୍କଳ ଏକାଗ୍ରତା ଚାହାଁନ୍ତି ନାହିଁ, ସଂପୂର୍ଣ୍ଣ ସନ୍ନ୍ୟାସ ଚାହାଁନ୍ତି ନାହିଁ, ସେ ଚାହାଁନ୍ତି ପ୍ରେମ, ଯେଉଁ ପ୍ରେମ ଦ୍ୱାରା ମଣିଷ ସକଳ ପ୍ରାଣୀଙ୍କଠାରେ ଭଗବାନଙ୍କୁ ଦେଖେ, ସକଳ ପ୍ରାଣୀଙ୍କ ସେବାରେ ଭଗବାନଙ୍କୁ ସେବାକରେ । ଭଗବତ ଶକ୍ତି ମଣିଷକୁ ନିଜର ଦେହଠାରୁ ଅଲଗା କରି ସମଗ୍ର ବିଶ୍ୱ ସହିତ ମିଳାଇଦିଏ । ବିଶ୍ୱାତ୍ମାନୁଭବ ଆଣେ । ବିଶ୍ୱ ଓ ନିଜ ମଧ୍ୟରେ କୌଣସି ଭେଦନାହିଁ । ନିଜଠାରୁ ଅନ୍ୟ କେହି ଅଲଗା ନୁହନ୍ତି, ଭିନ୍ନ ହୋଇ କିଛି ନାହିଁ, ଏସବୁ ଭାବନାରେ ଭାବାନ୍ୱିତ ହେଲେ ହୃଦୟରେ ଆସିବ ପରମେଶ୍ୱରଙ୍କ ସହିତ ମିଳନର ଇଚ୍ଛା । ସମସ୍ତଙ୍କ ହିତରେ ନିଜର ହିତ ନିହିତ ହେବ ।

ଏହି ଭଗବତ୍ ଧର୍ମର, ଭକ୍ତିଧର୍ମର ଆବିଷ୍କର୍ତ୍ତା ବ୍ୟାସଦେବ ବେଦକୁ ଚାରି ଭାଗରେ ବିଭକ୍ତ କରି, ଅଠର ପୁରାଣ ଲେଖି, ହରିବଂଶ ଲେଖି, ବିଶ୍ୱର ଦର୍ଶନ, ଜ୍ଞାନର ଭଣ୍ଡାର ଭଗବତ୍ ଗୀତା ଲେଖି, ମହାଭାରତ ଲେଖି, ତାଙ୍କର ପ୍ରାଣ ଅତୃପ୍ତ ହେବାରୁ, ମହର୍ଷି ନାରଦଙ୍କ ଉପଦେଶାନୁସାରେ ଶ୍ରୀମଦ୍ ଭାଗବତ ଲେଖିଲେ, ଯେଉଁଥିରେ ବର୍ଣ୍ଣିତ ଅଛି—ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା, ତାଙ୍କର ଐଶ୍ୱର୍ଯ୍ୟ, ପ୍ରେମ ଧର୍ମକଥା, ଧର୍ମ ଓ ସାମ୍ୟକଥା ।

ମହାଭାରତ ଯୁଦ୍ଧ ଶେଷ ହୋଇଥାଏ । ଦେଖାଗଲା ଜେତା, ବିଜେତା ସମସ୍ତଙ୍କର ବଂଶ ଶେଷହୋଇ ଆସିଲା । ଅନ୍ୟାୟ ଯୁଦ୍ଧରେ ଅଭିମନ୍ୟୁ ମଲେ— ତାଙ୍କର ସନ୍ତାନ ଉତ୍ତରା ଗର୍ଭରେ ଥାଏ । ମାତ୍ର ତାଙ୍କୁ ବିନାଶ କରିବା ପାଇଁ ଯେତେବେଳେ ବ୍ରହ୍ମାସ୍ତ୍ର ପ୍ରୟୋଗ ହେଲା, ନିଜେ ଭଗବାନ ନିଜ ଆଶୀର୍ବାଦ ବଳରେ ନିଜେ ଚକ୍ରପେଷି ରକ୍ଷାକଲେ—ପରୀକ୍ଷିତ ଜନ୍ମହେଲେ ଭଗବାନଙ୍କ ଆଶୀର୍ବାଦରୁ । ଗର୍ଭରୁ, ଜନ୍ମବେଳରୁ ତଥା ବାଲ୍ୟକାଳରୁ ରାଜା ପରୀକ୍ଷିତ ହରିଙ୍କୁ ପ୍ରାର୍ଥନା କରନ୍ତି । ଏପରି ପୁଣ୍ୟବନ୍ତ ରାଜା, ଏପରି ଭଗବାନ ଭକ୍ତଙ୍କୁ କେତେକ ଜାଗାରେ କୁହାଯାଇଛି ଯେ ମୃଗୟାରେ ସେ ବନକୁ ଯାଇଥିଲେ । ମୃଗ ନ ପାଇ ଘୋର ବନରେ ବୁଲି ବୁଲି ସେ କ୍ଷୁଧିତ, ତୃଷିତ ହେଲେ । ସେ ଖୋଜି ଖୋଜି

ଶୌମିକ ଋଷିଙ୍କ ଆଶ୍ରମକୁ ଗଲେ । ତୃଷା ମେଣ୍ଟାଇବା ପାଇଁ ଜଳ ଭିକ୍ଷାକଲେ । କଥିତ ଅଛି ଯେ, ଆସନ ନ ଦେବାରୁ, ଜଳ ଦେବାକୁ ଦ୍ୱିଜ ଅବଜ୍ଞା କଲା ଭାବି ରାଜା ମୃତ ସର୍ପକୁ ତାଙ୍କ ଗଳାରେ ଝୁଲାଇ ନିଜପୁରକୁ ଗଲେ । ଋଷିପୁତ୍ର ଅଭିଶାପ ଦେଲେ ସାତଦିନ ମଧ୍ୟରେ ତକ୍ଷକଙ୍କ ଦ୍ୱାରା ଦଂଶିତ ହୋଇ ମୃତ୍ୟୁଲାଭ କରିବ । ମାତ୍ର ଏହାର ଅନ୍ୟଭାବ ଅଛି । ରାଜା ପରୀକ୍ଷିତ ନିଜେ ପରମ ଭାଗବତ, ପରମ ଧାର୍ମିକ, ପରମ ଦୟାଳୁ, ପରମ ଭକ୍ତ । ତାଙ୍କଦ୍ୱାରା ଏ କାର୍ଯ୍ୟ ହେଲା କିପରି ? ଏପରି ସର୍ବଗୁଣସମ୍ପନ୍ନ ରାଜା ଏପରି କାମକଲେ କାହିଁକି ? ଯଦି ରାଜା ଫେରି ଆସୁଛନ୍ତି ତେବେ ଋଷିଙ୍କର ସବୁ ତପୋବଳ, ସବୁ ଧର୍ମବଳ ଆପେ ଆପେ ତାଙ୍କ ନିକଟ ଆସିବ, କାରଣ ସେ ଅତିଥି । ଅତିଥି ଫେରିଲେ ଋଷି, ଯୋଗୀ, ମୁନି-ମାନଙ୍କର ଅଧର୍ମ ହୁଏ । ଫଳରେ ସଞ୍ଚିତ ତପୋବଳର କ୍ଷୟ ହୁଏ, ବିଳୟ ହୁଏ । ସେଥିପାଇଁ ରାଜା ଏପରି କାର୍ଯ୍ୟକଲେ । ଋଷି ସେତେବେଳେ ତପସ୍ୟାରତ ଥିଲେ । ତପସ୍ୟା ପରେ ସବୁକଥା ଜାଣିଲେ । ରାଜାଙ୍କ ବ୍ୟବହାରରେ କିଛି ମନେକଲେ ନାହିଁ; ନିଜପୁତ୍ରର ଦୁଷ୍କର୍ମ ପାଇଁ ରାଗିଲେ । ପୁତ୍ରକୁ ବୁଝାଇଲେ ଯେ ପରୀକ୍ଷିତ ବିଷ୍ଣୁ ଅଂଶରେ ଜନ୍ମହୋଇ ଧର୍ମପାଳନ କରୁଛନ୍ତି । ଶାନ୍ତି ସୁଖରେ ପ୍ରଜାପାଳନ କରୁଛନ୍ତି । ସେ ସୁକୃତବନ୍ତ । ସେ ଚକ୍ରବର୍ତ୍ତୀ । ପୁଣି ଉପାୟ ଉଦ୍ଭାବନ କରି, ନିଜର ଯୋଗବଳକୁ ଦେଇ ରାଜାଙ୍କ ନିକଟକୁ ଖବର ପଠାଇଲେ । ରାଜା ମଧ୍ୟ ଅନୁତାପ କଲେ । ନିର୍ଦ୍ଦୋଷ ବ୍ରାହ୍ମଣ ଯୋଗରତ ଥିବାବେଳେ ନିଜର କୁକର୍ମକୁ ନିନ୍ଦିତ କର୍ମ ଭାବି ମରଣକୁ ବରଣ କଲେ । ସାତଦିନ ପରେ ସର୍ପଦଂଶନଦ୍ୱାରା ମରଣକୁ ସ୍ୱାଗତକଲେ । ମାତ୍ର କୁଳରେ ପାପ ନ ରହିବାପାଇଁ ରାଜା ପରୀକ୍ଷିତ ନିଜର ପୁତ୍ର ଜନ୍ମେଜୟଙ୍କୁ ରାଜ୍ୟଭାର ଦେଇ ଜାହ୍ନବୀତୀରରେ ଆହାରଶୂନ୍ୟ ହୋଇ କୁଶଶଯ୍ୟାରେ ବସିରହିଲେ । ଅନେକ ମୁନି ଋଷିଙ୍କର ସମାବେଶ ହେଲା । ଶୁକଦେବ ତାଙ୍କ ପିତା ମହର୍ଷି ଦ୍ୱୈପାୟନଙ୍କ ଠାରୁ ଶ୍ରୀମଦ୍ ଭାଗବତ ଶିକ୍ଷା କରିଥିଲେ । ମାତ୍ର ୬ ବର୍ଷ ବୟସରେ ଶୁକଦେବ ମହାବିଦ୍ୱାନ, ବିକାରଶୂନ୍ୟ, ସର୍ବଦର୍ଶୀ ଥିଲେ । ସେ ଉପସ୍ଥିତ ହୋଇ ସାତଦିନ ମଧ୍ୟରେ ମରିବାପାଇଁ ଯାଉଥିବା ରାଜା ପରୀକ୍ଷିତଙ୍କୁ ଭଗବାନଙ୍କୁ ପାଇବାପାଇଁ ସର୍ବୋଚ୍ଚ ପନ୍ଥା କ'ଣ ଏକଥା ଶ୍ରୀମଦ୍ ଭାଗବତ ଉପାଖ୍ୟାନ ମାଧ୍ୟମରେ ବୁଝାଇଦେଲେ ।

ଭାଗବତର ଅର୍ଥ ଭକ୍ତ ଯେ ଭଗବାନଙ୍କଠାରେ ସମସ୍ତ ସମର୍ପଣ କରିବ, ଭକ୍ତି କରିବ, ତାର ଭୟ ଦୂରହେବ । ଭକ୍ତି ଦୃଢ଼ହେବା ଉଚିତ । ଜାଗ୍ରତ ହେବା ଉଚିତ । ତା ନ ହେଲେ ବୁଝିବାକୁ ହେବ ଯେ ଭକ୍ତିରେ ଜଡ଼ତା ଅଛି । ଭଗବତ ଭକ୍ତିକଲେ ମଣିଷ ନିର୍ଭୀକ ହୁଏ, ନିଜର ଦେହଠାରୁ ଅଲଗାକରି ସମଗ୍ର ବିଶ୍ୱ ସହିତ ମିଶାଇ ଦିଏ । ଆସେ ବିଶ୍ୱାତ୍ମାନୁଭବ । ଏହି ଭାବନାରେ ଭାବାନ୍ୱିତ ହେଲେ ପରମେଶ୍ୱର ମିଳନର ଇଚ୍ଛା ଜାଗ୍ରତ ହୁଏ, ବ୍ୟାକୁଳତାର ସହିତ ତାଙ୍କୁ ଖୋଜେ, ଡାକେ, ଭଜନକରେ ଭୟଶୂନ୍ୟ ହୋଇ । ସମସ୍ତଙ୍କ ହିତରେ ନିଜ ହିତକୁ ନିହିତ କରି, ଜଡ଼ଚେତନ ମନୁଷ୍ୟ ଭେଦରେ ଅଭେଦ ଦେଖି ପରମେଶ୍ୱରଙ୍କ ସହିତ ମିଶିଯିବାର ବ୍ୟାକୁଳତା ଆଣେ । ଏହାହିଁ ବ୍ୟାସଦେବ ବିଶ୍ୱର ଦର୍ଶନ ଜ୍ଞାନର ଭଣ୍ଡାର ଶ୍ରୀମଦ ଭାଗବତରେ ଲେଖିଥିଲେ ଓ ତାଙ୍କ ପୁତ୍ର ଶୁକଦେବ ସ୍ପଷ୍ଟରୂପେ ବ୍ୟାଖ୍ୟା କରିଥିଲେ । ପରୀକ୍ଷିତ ମହାରାଜାଙ୍କ ନିକଟରେ ସାତଦିନରେ ଓ ଏହାର ମାଧ୍ୟମରେ ସାରସୃଷ୍ଟିକୁ ଶୁଣାଇଥିଲେ । ଦେଇଥିଲେ ଜୀବନରେ ନୂତନତାର ଅଭିଜ୍ଞାନ, ବୃଦ୍ଧକୁ କରିଥିଲେ ଯୁବକ ।

ଏହି ଧର୍ମଗ୍ରନ୍ଥର ଏକସପ୍ତାହବ୍ୟାପୀ ଉପାଖ୍ୟାନ ମୋକ୍ଷ ଦାନକରେ ବିଶେଷତଃ ଏ କଳିଯୁଗରେ । ଏ ଯୁଗର ଲୋକେ ସାଧାରଣତଃ ପାଷାଣ୍ଡ, ସ୍ୱଭାବ ସେମାନଙ୍କର ପୈଶାଚିକ, ଲୋକେ ସ୍ୱାର୍ଥାନ୍ଧ, ନିଜର ଉଦର ପୂରଣରେ ବ୍ୟସ୍ତ, ସେମାନେ ବୁଦ୍ଧିହୀନ, ନୀତିହୀନ, ସଦା କଳହରତ, ସେମାନେ ସଦାସ୍ୱଚ୍ଛହୀନ, ଶଠ, ଦୁଷ୍କର୍ମରତ । ସେଥିପାଇଁ ଏ ଭକ୍ତିଧର୍ମ ହିଁ ଯୁଗଧର୍ମ ଓ ମୋକ୍ଷର ମାର୍ଗ । ଏ ଯୁଗରେ ଭକ୍ତି ହିଁ ମୋକ୍ଷର ମାର୍ଗ । ଭଗବାନଙ୍କୁ ଲାଭର ମାର୍ଗ । ଏହି ଭକ୍ତି ଦ୍ୱାରା ଭଗବାନ ଶ୍ରୀକୃଷ୍ଣ ନିଜ ଦ୍ୱାରକୁ ଆସିଥାନ୍ତି । ସଂକଳ୍ପ ନୁହେଁ, ତୀର୍ଥଯାତ୍ରା ନୁହେଁ, ଆଧ୍ୟାତ୍ମିକ ସାଧନା ନୁହେଁ, ବେଦ ଉପନିଷଦ ଅଧ୍ୟୟନ ନୁହେଁ, ଯାଗ ନୁହେଁ, ଜ୍ଞାନ ନୁହେଁ, କେବଳ ଭଗବାନଙ୍କ ପ୍ରତି ଭକ୍ତି ହିଁ ମୁକ୍ତିଦାତା । ଭକ୍ତି, ଜ୍ଞାନ, ବୈରାଗ୍ୟ ମଧ୍ୟରେ ଭକ୍ତି ହିଁ ଶ୍ରେଷ୍ଠ । ଶ୍ରୀମଦ୍ ଭାଗବତ ଅଧ୍ୟୟନ, ଜ୍ଞାନଯୋଗ ବୋଲି ଶୁକଦେବଙ୍କର ମତ । ପଠନ, ଭଜନ, କୀର୍ତ୍ତନ ଆଣିବ ଭକ୍ତି, ଜ୍ଞାନ ଓ ବୈରାଗ୍ୟ । ଜ୍ଞାନ ଓ ବୈରାଗ୍ୟର ବିଲୋପ ହେବ, ଆସିବ ଭକ୍ତି ଆନନ୍ଦ ପ୍ରେମ । କଳିଯୁଗର ଯେତେ ଦୁର୍ଦ୍ଦଶା ସବୁ ଉଭେଇଯିବ ଶ୍ରୀମଦ୍ ଭାଗବତ ପଠନ, ଶ୍ରବଣ, ଆଚରଣଦ୍ୱାରା ଭକ୍ତି ଉତ୍ପାଦନ କରିବ ପ୍ରେମ, ନାଚିଉଠିବ ପ୍ରତ୍ୟେକ ହୃଦୟ, ପ୍ରତ୍ୟେକ ଘର, ସାମୂହିକ ଚିତ୍ତଶୁଦ୍ଧି ଦ୍ୱାରା ତୋଳିବ ସାମୂହିକ ଚିତ୍ତନିର୍ମାଣ । ଏହାହିଁ ଭାଗବତ ସପ୍ତାହର ବିଶେଷତ୍ୱ ଓ ବିଲକ୍ଷଣତା, କାରିଗରୀ ଓ ଐଶ୍ୱର୍ଯ୍ୟ । ଏହାହିଁ ଶ୍ରୀମଦ୍ ଭାଗବତର ଜ୍ଞାନ ଯଜ୍ଞ, ଯାହା ଭକ୍ତିଜ୍ଞାନର ପ୍ରଚାର, ପ୍ରସାର ପାଇଁ ଓ ମୁକ୍ତି ପାଇଁ । ଶ୍ରୀମଦ୍ ଭାଗବତ ଶ୍ରବଣଦ୍ୱାରା ଭଗବାନ ହୃଦୟରେ ଆସ୍ତେ ଆସ୍ତେ ଅବସ୍ଥାନ କରନ୍ତି । ସେ ହୁଏ ଭାଗ୍ୟବାନ୍ । ଦୁଷ୍ଟ, ମୂର୍ଖ, ପାପୀ— ଏପରିକି ପଶୁପକ୍ଷୀ ସମସ୍ତଙ୍କ ଉପରେ ଏହାର ଗୁଣ ଅଛି । ଉଭେଇଯାଏ ପାପ, ତାପ, ଅନୀତି, ରାଗ, ଅହଂକାର, ହିଂସା, ଭଣ୍ଡାମି, ନିଷ୍ଠୁରତା ଭାଗବତ୍ ଜ୍ଞାନଯଜ୍ଞ ଦ୍ୱାରା । ଯେଉଁ ଘରେ ଏହା ପାଠ କରାଯାଏ, ତାହା ହୁଏ ପବିତ୍ର । ଯେଉଁ ସ୍ଥାନରେ ଏହା ସାତଦିନବ୍ୟାପୀ ପଢ଼ାଯାଏ ସେ ସ୍ଥାନ ହୁଏ ମର୍ତ୍ତ୍ୟରେ ଗୋଲୋକ । ଏହାର ପଠନର ପ୍ରତିଦାନ ରାଜସୂୟ ଅଶ୍ୱମେଧ ଯଜ୍ଞଠାରୁ ଖୁବ୍ ବେଶୀ । ସପ୍ତାହବ୍ୟାପୀ ପଠନ ଓ ଶ୍ରବଣର ପବିତ୍ରତା ଓ ଉପକାରିତା ଅନ୍ୟାନ୍ୟ ଯଜ୍ଞ, ଉପାସନା ଓ ଉପବାସଠାରୁ ଉତ୍କୃଷ୍ଟ । ସମସ୍ତ ଦେବଦେବୀ ଠୁଳହୁଅନ୍ତି ସେ ସ୍ଥାନରେ । ଦୁଃଖର ଯନ୍ତ୍ରଣା, ଦାରିଦ୍ର୍ୟର ନିଷ୍ପୀଡନ, ମାୟାର ମୋହ, ମୃତ୍ୟୁର ଭୟ ବିଭୀଷିକାର ଅବସାନ ହୁଏ । ଯେ ପାପକାର୍ଯ୍ୟରେ ଲିପ୍ତ, ଯାହାର ନୈତିକ ପତନ ହୋଇଛି, ଯେ ଦୁଷ୍କର୍ମରେ ଲିପ୍ତ, ତା'ର ମଧ୍ୟ ମୋକ୍ଷ ହୁଏ । ସପ୍ତଦିନବ୍ୟାପୀ ଶ୍ରୀମଦ୍ ଭଗବତ୍ ଜ୍ଞାନଯଜ୍ଞଦ୍ୱାରା ମୁକ୍ତି ମିଳେ । ଶ୍ରାବଣ, ଭାଦ୍ରବ, ଆଶ୍ୱିନ, କାର୍ତ୍ତିକ, ମାର୍ଗଶୀର ଖୁବ୍ ଶୁଭ ଏ ଯଜ୍ଞପାଇଁ । ଏହା ଏପରି ଯାଗାରେ ହେବା ଉଚିତ୍ ଯେ, ଶୂଦ୍ର ଓ ଅନ୍ୟାନ୍ୟ ଇତର ତଳ ଜାତିର ଲୋକ ଓ ସ୍ତ୍ରୀଲୋକମାନେ ଭଲଭାବରେ ଶୁଣିପାରିବେ । ପତ୍ର ଇତ୍ୟାଦି ଦ୍ୱାରା ଖବର ପଠାଯିବା ଉଚିତ । ତୀର୍ଥସ୍ଥାନ, ବଣ ଅଥବା ନିଜର ବାସସ୍ଥାନରେ ହେବା ଉଚିତ । ଶ୍ରଦ୍ଧାର ସହିତ ଆଗ୍ରହର ସହିତ ଶୁଣିବା ଉଚିତ୍ । ଦରିଦ୍ର, ରୁଗ୍ଣ, ହତଭାଗ୍ୟ, ସନ୍ତାନହୀନ ଲୋକ ଯାହାର ଆସନ୍ନ ମୃତ୍ୟୁ ସେ ମଧ୍ୟ ଶୁଣିବା ଉଚିତ୍ ଏହା ଜ୍ଞାନର ଭଣ୍ଡାର । ବ୍ୟାସ ଦେବଙ୍କର ପ୍ରଦତ୍ତ ସଂପତ୍ତି । ଏହି ପ୍ରାଚୀନ ମହାକାବ୍ୟ ପ୍ରଚାର କରେ ଜ୍ଞାନ, ସଂଯମ, ଆତ୍ମଶକ୍ତି, ଆତ୍ମଶିକ୍ଷା, ପ୍ରେମ, ଧର୍ମଭାବ, ନିଷ୍କାମ ଭକ୍ତି ଏବଂ ଆଣିଦିଏ ମୋକ୍ଷ, ଭଗବାନଙ୍କୁ ମଧ୍ୟ । ନାରୀ, ଶୂଦ୍ର, ପତିତ, କ୍ଷତ୍ରିୟ, ବୈଶ୍ୟ, ଏପରିକି ପତିତ ବ୍ରାହ୍ମଣ ବେଦ ଶୁଣିବାରୁ ବଞ୍ଚିତ । ସେଥିପାଇଁ ବ୍ୟାସଦେବ ନାରଦଙ୍କ ପରାମର୍ଶ ଅନୁସାରେ ଶ୍ରୀମଦ୍ ଭାଗବତ ରଚନା କରିଥିଲେ ଯାହା ବେଦର

ନିର୍ଯ୍ୟାସ । ଏହି ସପ୍ତାହବ୍ୟାପୀ ଭାଗବତ ପଠନ, ଶ୍ରବଣ, ମନନ, ଆଚରଣ ଘେନି ଯିବ ଭଗବାନଙ୍କ ନିକଟକୁ, ଦେବ ମୁକ୍ତି । ଏହି ପ୍ରେମଭକ୍ତି ମନୁଷ୍ୟକୁ କରେ ମାୟାଶୂନ୍ୟ, ଧନ ଅର୍ଜନ କରାଇ, ଧନକୁ ଧର୍ମପାଇଁ ଖର୍ଚ୍ଚକରାଇ ନେଇଯାଏ ଭଗବାନଙ୍କ ନିକଟକୁ । ଭଗବାନଙ୍କ ଭକ୍ତି ସମ୍ପର୍କ ଜାଗ୍ରତ କରାଏ । ବୈରାଗ୍ୟ ଜନ୍ମାଏ । ଜ୍ଞାନ ଦାନ କରାଏ—ଏହା ହିଁ ଶ୍ରୀମଦ୍ ଭାଗବତର ମହାତ୍ମ୍ୟ । ଭଗବାନ ଶ୍ରୀକୃଷ୍ଣଙ୍କର କଥା ଶୁଣିବାକୁ ରୁଚି ଆସିବ, ଅଗ୍ରହ ବଢ଼ିବ । ଲାଳସା ବଢ଼ି ଆନନ୍ଦ ଆଣିବ । ହୃଦୟ ପବିତ୍ର ହୋଇ ମନ ନିର୍ମଳ ହେବ । ନିଜ ହୃଦୟରେ ଭଗବାନଙ୍କର ସ୍ଥିତି ଅନୁଭବ କରିବ । ଉପଲବଧି କରିବ ସାତ୍ତ୍ୱିକ ଗୁଣର ଉତ୍କର୍ଷ ସାଧନାଦ୍ୱାରା । ନିଷ୍କାମ ଏକକ ଭକ୍ତି, ଶ୍ରଦ୍ଧାଭକ୍ତି ଭଗବାନଙ୍କୁ ଆଣିଦେବ ଯାହା ଅର୍ଜୁନ ପ୍ରମାଣ କରିଛନ୍ତି ମହାଭାରତ ଯୁଦ୍ଧ ଶେଷରେ । ଭଗବାନ ଶ୍ରୀକୃଷ୍ଣଙ୍କ ଛଡ଼ା ସେ କିଛି କରି ନାହାନ୍ତି । ପ୍ରେମଭକ୍ତି ହିଁ ଆତ୍ମୋନ୍ନତି କରି ଅତ୍ମଜ୍ଞାନ ଆଣେ, ଯାହା ଜୀବନର ସର୍ବୋଚ୍ଚ କାମ୍ୟ, ଜୀବନର ସାର୍ଥକତା, ସର୍ବୋଚ୍ଚ ଉପହାର ।

ରଜା ପରୀକ୍ଷିତଙ୍କୁ ଶୁକଦେବ କହିଥିଲେ ଶ୍ରୀମଦ୍ ଭାଗବତ ପଠନ, ଭଗବାନ ଶ୍ରୀକୃଷ୍ଣଙ୍କର ଗୁଣକୀର୍ତ୍ତନଦ୍ୱାରା ହୃଦୟ ବିଗଳିତ ହୁଏ, ନିଷ୍କାମ ଭକ୍ତି ଜନ୍ମେ, ଭଗବାନ ହିଁ ମୋକ୍ଷଦାତା । ତାଙ୍କର ନାମକୀର୍ତ୍ତନ ମୋକ୍ଷପ୍ରାପ୍ତିର ଉପାୟ । ଏହା ସର୍ବଭୟ ହରଣ କରେ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ସର୍ବୋଚ୍ଚ ସ୍ଥିତପାଇଁ ଉତ୍ସର୍ଗ ହୁଏ । ଏହିମାତ୍ର ସାତଦିନ ରଜାଙ୍କର ଜୀବନ । ତେଣୁ ଏହି ସମୟ ମଧ୍ୟରେ ତାହା ମଙ୍ଗଳପାଇଁ କାର୍ଯ୍ୟକରୁ, ଜୀବନାବସାନ ବେଳେ ଭୟଶୂନ୍ୟ ହେଉ । ଶରୀରର ସମସ୍ତ ବନ୍ଧନ ତୁଟାଉ ।

ଏହି ହରିଙ୍କର ନାମ କୀର୍ତ୍ତନ, ଭକ୍ତି ଧର୍ମର ଉପକାରିତା, ଏ କଳିଯୁଗରେ ବର୍ଣ୍ଣିତ ଅଛି ଶ୍ରୀମଦ୍ ଭାଗବତରେ । ଏ ଭାଗବତ ପୁରାଣକୁ ଭଗବାନ କହିଛନ୍ତି ବ୍ରହ୍ମାଙ୍କୁ, ବ୍ରହ୍ମା ନାରଦଙ୍କୁ, ନାରଦ ବ୍ୟାସଦେବଙ୍କୁ କହିଛନ୍ତି ସରସ୍ୱତୀ ନଦୀ କୂଳରେ । ଶୁକ ନିଜ ପିତା ବ୍ୟାସଙ୍କଠାରୁ ଶିଖିଲେ । ପ୍ରଭୁ ସଙ୍କର୍ଷଣ ସନତ୍ କୁମାରଙ୍କୁ ଏହା କହିଲେ । ଶିଶୁ ହେଲେ ମଧ୍ୟ, ଅଳ୍ପ ବୟସ୍କ ହେଲେ ମଧ୍ୟ ଧ୍ରୁବ ପ୍ରହ୍ଲାଦଙ୍କ କରୁଣ ପ୍ରାର୍ଥନା, ନିଷ୍ଠାପର ଭକ୍ତି ଭଗବାନଙ୍କୁ ଏମାନଙ୍କ ପାଖକୁ ଟାଣି ଆଣିଥିଲା ।

ସତ୍ ଓ ପବିତ୍ର ବିଦୁର ଶ୍ରଦ୍ଧାଦ୍ୱାରା, ପ୍ରଗାଢ଼ ଭକ୍ତିଦ୍ୱାରା ଆଦର୍ଶ ପ୍ରେମଭକ୍ତି ଦେଖାଇଥିଲେ । ଦାରିଦ୍ର୍ୟ ତାର ପ୍ରତିବନ୍ଧକ ନୁହେଁ, ବରଂ ସହାୟକ । ଯାତନା ଓ ଦୁଃଖକଷ୍ଟ ପାଇଲେ ବି ଧର୍ମ ଯତ୍‌ପକ୍ଷରେ, ନ୍ୟାୟ ତତ୍‌ପକ୍ଷରେ; ତେଣୁ ବିଜୟ ନିଶ୍ଚିତ ।

ଏହା ପ୍ରମାଣିତ ହୋଇଥିଲା ପଞ୍ଚ ପାଣ୍ଡବଙ୍କର ଜତୁ ଗୃହରୁ ରକ୍ଷାପାଇବା ସମୟରେ, ଦ୍ରୌପଦୀଙ୍କ ଉଲଗ୍ନବେଳେ ଓ ୧୩ ବର୍ଷ ବନବାସ ଜୀବନରେ । ଭାବନାତୀତ ଭଗବାନ୍‌ଙ୍କୁ ଭୁବନ ଭିତରେ ଅବତରଣ କରାଇଥିଲେ ଭକ୍ତ, ଧାର୍ମିକ, ସେମାନଙ୍କର ବିରଳପ୍ରାର୍ଥନା, ସେମାନଙ୍କର ସପ୍ତାହବ୍ୟାପୀ ଭାଗବତ ପଠନ ଓ କୀର୍ତ୍ତନ । ଜନ୍ମ ନେଲେ ଶ୍ରୀଚୈତନ୍ୟ । ପ୍ରଚାର କଲେ ପ୍ରେମଧର୍ମ । ପ୍ରେମଧର୍ମର ଆଧ୍ୟାତ୍ମିକ ପ୍ରୟୋଜନୀୟତା ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ସମାନ । ଯେଉଁଠ ରେ ଉଗ୍ର ସାମାଜିକ ବୈଷମ୍ୟ ବେଶି, ଯେଉଁଠାରେ ସମାଜ ଉଦ୍ଧତ, ସେଇଠାରେ ଆଧ୍ୟାତ୍ମିକତା ବେଶି ଦରକାର, ଯାହା ମିଳେ ଭାଗବତ ଧର୍ମରୁ ଓ ଭାଗବତରୁ ।

ଶ୍ରୀମଦ୍ ଭାଗବତ ଜ୍ଞାନଯଜ୍ଞ, ଭାଗବତ୍ ଧର୍ମ, ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳାକଥା ପ୍ରେମଧର୍ମକଥା, ଧର୍ମ ସାମ୍ୟ କଥା ଓ ଏହାର ମହତ୍ତ୍ୱ ପ୍ରଚାରକଲେ ଶ୍ରୀଚୈତନ୍ୟ । ନିମ୍ନ ଶୂଦ୍ରମାନଙ୍କୁ ଆଦିବାସୀ, ହରିଜନ, ପତିତ ପତିତାମାନଙ୍କୁ ସମାଜରେ ଉପଯୁକ୍ତ ମର୍ଯ୍ୟାଦା ଦିଆଗଲା ଏହି ଭକ୍ତିବାଦ କରିଆରେ । ସାମାଜିକ ପାପ, ସାମାଜିକ କଳଙ୍କର ସ୍ରୋତ ବୈଷମ୍ୟର ଉପଶମ ହେଲା । ସେ ଗଢ଼ିଲେ ସୁସଂସ୍କୃତ ସମାଜ । ଏହାହିଁ ଷୋଡ଼ଶ ଶତ ବାର ଧର୍ମ ବିପ୍ଳବ, କାରଣ ଆଧାରିତ ବିପ୍ଳବ । ଧର୍ମ ଆଚରଣରେ ଅବାଞ୍ଛିତ ପ୍ରଥା ଦୂରକଲେ । ଧର୍ମରେ ଭୟକୁ ଭାଙ୍ଗିଲେ, ଆଣିଲେ ମାଧୁର୍ଯ୍ୟ, ପରିମାନନ୍ଦଦାୟୀ ନାମ ସଂକୀର୍ତ୍ତନ ଭାଗବତ ସପ୍ତାହ ଏକ ଅଂଶ । ଏହାକୁ ଆବିଷ୍କାର କଲେ, ଏହାର ମହତ୍ତ୍ୱ ପ୍ରଚାରକଲେ ଶ୍ରୀଚୈତନ୍ୟ । ଏହି ପ୍ରେମଭକ୍ତି ଅଣିଦିଏ ମୁକ୍ତି, ଯାହାକି ମନୁଷ୍ୟ ଜୀବନର ଶ୍ରେଷ୍ଠ ଶ୍ରୀ, ଶ୍ରେଷ୍ଠ ସମ୍ପଦ, ଶ୍ରେଷ୍ଠ କୀର୍ତ୍ତି, ପ୍ରକୃତ ବିଦ୍ୟା । ଆତ୍ମ ସମର୍ପଣରେ ହିଁ ଭକ୍ତ ଭଗବାନଙ୍କୁ ସବୁବେଳେ ସଙ୍ଗରେ ରଖେ । ଭାବ ଓ ପ୍ରେମ ସାତ୍ତ୍ୱିକ ମାନବର ଶୁଦ୍ଧିକରେ, ନିଷ୍କାମ କର୍ମ ହିଁ ସାତ୍ତ୍ୱିକ, ସାତ୍ତ୍ୱିକ ଗୁଣର ଉତ୍କର୍ଷ ସାଧନହିଁ ଦେବତ୍ୱ, ଗଢ଼େ ସ୍ୱର୍ଗ । ସତ୍ତ୍ୱଗୁଣଦ୍ୱାରା ବିକଶିତ ଶାନ୍ତି ଚିତ୍ତ ଯେତେବେଳେ ପରମେଶ୍ୱରଙ୍କଠାରେ ଅର୍ପିତ ହୁଏ ସାଧକର ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ ଆପେ ଆପେ ଆସେ । ସବୁ ପ୍ରାଣୀ ଓ ନିଜ ମଧ୍ୟରେ ପରମାତ୍ମା ଅଛନ୍ତି । ଯାହାକୁ ଆମେ କହୁ ଏକାତ୍ମତା । ଏହାହିଁ ବିଜ୍ଞାନ । ନିଜ ଆତ୍ମାରେ ଓ ଭଗବାନଙ୍କଠାରେ ଅଭେଦ ଦୃଷ୍ଟି ହିଁ ବିଦ୍ୟା ।

ଜଗନ୍ନାଥ ଦାସଙ୍କ ଭାଗବତ ଅତି ସରଳ, ଅତି ଉପାଦେୟ । ଅତୀତରେ ଭାଗବତରେ ସପ୍ତାହ ବସୁଥିଲା । କାରଣ ଧର୍ମପାଳନ, ଧର୍ମରକ୍ଷା, ପ୍ରତ୍ୟେକ କ୍ଷେତ୍ରରେ ସମାଜ ପୂର୍ଣ୍ଣତା ଲାଭ କରିଥିଲା । ବର୍ତ୍ତମାନ ଅତ୍ୟନ୍ତ ହୀନ ନୈତିକ ଦୁରବସ୍ଥା ଆସିଛି । ସେ ଦିନର ସୁସଂସ୍କୃତ ସମାଜ ନାହିଁ । କୌଣସି କେଉଁଠି କେଉଁଠି କେମିତି ଭାଗବତର ସଚ୍ଚା ଭବୋଚ୍ଛ୍ୱାସର ଗଭୀରତା, ସରସତା ଓ ଉନ୍ମାଦନା ଲକ୍ଷ୍ୟ କରାଯାଉଛି । ଆଧ୍ୟାତ୍ମିକ ବୈଷମ୍ୟ ଦେଖା ଦେଲାଣି । ଏ ସବୁ ସମାଜର ଅସାମ୍ୟକୁ ଆଶ୍ରୟକରି ଗତି କଲାଣି । ଏହାହିଁ ଆଜିର ଦୁଃଖ, ଆଜିର ଚିନ୍ତା, ଆଜିର କ୍ଷୋଭ ।

ସମୟ ଅଛି—ଏସବୁ ସତ୍ କର୍ମ ଯଦି ଜୀବନ୍ତ ହୁଏ ତେବେ ଆସିବ ଘୃଣାର ବିସର୍ଜନ, ଦୁଃଖର ଅବସାନ, ପରଶ୍ରୀକାତରତା, ଅହଂକାର, ଔଦ୍ଧତ୍ୟର ନାଶ; ଆମର ହୃଦୟରେ ଜାଗ୍ରତ କରିବ ଅଭୂତପୂର୍ବ ଅନୁଭୂତି, ମହାନନ୍ଦ, ସରସତା, ଅପୂର୍ବ ମାଧୁର୍ଯ୍ୟ । ଯେଉଁ ଅମୃତପ୍ରବାହ ବୁହାଇଦେବ ସମସ୍ତଙ୍କ ଆତ୍ମାରେ, ଅନୁଭବ କରାଇଦେବ ଜୀବନ୍ତ ଭଗବାନ । ଏ ସତ କାର୍ଯ୍ୟ ଆଣିବ ମାନବିକ ରୁଚିର ଜୟଯାତ୍ରା, ବୁଦ୍ଧିର ନୂତନ ଜୀବନ, ଗଢ଼ାହେବ ସର୍ବଶ୍ରେଷ୍ଠ ସମାଜ । ମନୁଷ୍ୟ ଜୀବନରେ ହେବ ରୂପାନ୍ତରିତ 'ସତ୍ୟଂ-ଶିବଂ-ସୁନ୍ଦରମ୍' ରେ ।

"ମୋର ସ୍ମରଣେ ଯା'ର ଚିତ୍ତ । ତା ଦେହେ ଥାଇ ମୁଁ ନିରତ ॥
ସ୍ୱଭାବେ ନିରପେକ୍ଷ ଶାନ୍ତ । ତପସ୍ୱୀ, ରିପୁ ବିବର୍ଜିତ ॥
ସମ-ଦରଶୀ ପ୍ରେମାପ୍ଲୁତ । ଦୟାସାଗର ପରହିତ ॥
ଏମନ୍ତ ପ୍ରାଣୀଙ୍କର ପଛେ । ନିତ୍ୟେ ମୁଁ ବୁଲଇ ପ୍ରତ୍ୟକ୍ଷେ ॥

( ଶ୍ରୀ ଜଗନ୍ନାଥ ଦାସ )

# ଭାଗବତ ଗୁରୁତତ୍ତ୍ୱର ସାମାଜିକ ତାତ୍ପର୍ଯ୍ୟ

ଅଧ୍ୟାପିକା ସବିତା ଶତପଥୀ

"ହେ ମହାଯୋଗ ଯୋଗେଶ୍ୱର । ଦୁର୍ଲ୍ଲଭ ବଚନ ତୁମ୍ଭର ॥
ନ ପଶେ ମୋହର ହୃଦୟେ । ନଳିନୀଦଳେ ଜଳପ୍ରାୟେ" ॥

ଆକୁଳ କଣ୍ଠରେ ଉଦ୍ଧବଙ୍କର ଜଣାଣ—"ହେ କୃଷ୍ଣ, ମୁଁ ତୁମକୁ ଛାଡ଼ି ପାରିବି ନାହିଁ । ତୁମେ ନିଶ୍ଚିନ୍ତରେ ରହିବାକୁ ଯେତେ ଉପଦେଶ ଦେଲ ସେ ସବୁ ପଦ୍ମପତ୍ରକୁ ଜଳ ସ୍ପର୍ଶ ନକଲା ଭଳି ମୋର ବିରହାତୁର ଅନ୍ତରକୁ ସ୍ପର୍ଶ କରି ପାରିଲା ନାହିଁ । ତୁମେ ମୋର ଆଶୈଶବ ପ୍ରିୟ, ପ୍ରାଣର ଅଧିଷ୍ଠିତ ଦେବତା...... ତୁମର ଦେହ ତ୍ୟାଗରେ ମୁଁ ଏକାକୀ କିପରି ବା ବଂଚି ପାରିବି ? ଅନାସକ୍ତି ନିର୍ଲିପ୍ତତା ଆଦି ଯେଉଁସବୁ ମାନସିକ ଅବସ୍ଥାର ଅବତାରଣା ତୁମେ କରୁଛ— ସେ ସବୁ ମୁଁ ଅଭ୍ୟାସ କରିନାହିଁ—କିପରି ବା ପ୍ରିୟଜନର ଅଦର୍ଶନକୁ ସହ୍ୟ କରିବି ?"

କୃଷ୍ଣ ସଂସାରର ଲୀଳା ସାରି ଗୋଲୋକଧାମକୁ ଯିବାଲାଗି ପ୍ରସ୍ତୁତ ହେଉଥା'ନ୍ତି । ପ୍ରିୟ ଭକ୍ତ ଉଦ୍ଧବ ଏ ଉଦ୍ଦେଶ୍ୟ ଅବଗତ ହୋଇ ଦୁଃଖରେ ଭାଙ୍ଗି ପଡ଼ୁଥା'ନ୍ତି । ଏହିଠାରେ ଜୀବନର ଅନିତ୍ୟତା ଓ ଦୁର୍ଲ୍ଲଭ ମଣିଷ ଦେହରେ ଅଧିଷ୍ଠିତ ଆତ୍ମାର ମୋକ୍ଷ କାମନା ବିଷୟରେ ମହାଯୋଗୀ କୃଷ୍ଣ ତାଙ୍କୁ ବୁଝାଇଛନ୍ତି । ଏ ସମ୍ପର୍କରେ ସେ ଯଦୁରାଜା ଅବଧୂତଙ୍କର ତତ୍ତ୍ୱାଲୋଚନାର ଉଦାହରଣ ଦେଇଛନ୍ତି । ମର୍ତ୍ତ୍ୟମଣ୍ଡଳରେ ଜନ୍ମହୋଇ ମଣିଷ ମଧ୍ୟ ନିର୍ଲିପ୍ତ, ଅନାସକ୍ତ ରହିପାରେ । ଆସକ୍ତି ଓ ମୋହାନ୍ଧତା ଦୁଃଖର ହେତୁ । ଏହି ଉପାଖ୍ୟାନ ଉଦ୍ଧବଙ୍କୁ ଉକ୍ତ ସତ୍ୟ ସ୍ପଷ୍ଟରୂପେ ବୁଝାଇ ପାରିଛି ।

ଦ୍ୱାପର ଓ କଳିର ସନ୍ଧିକ୍ଷଣରେ ରାଜା ପରୀକ୍ଷିତ, ଋଷି ଓ କବି ବ୍ୟାସଦେବ ବିଦ୍ୟମାନ । ଶାପଗ୍ରସ୍ତ ପରୀକ୍ଷିତଙ୍କର ଆକୁଳ ଜିଜ୍ଞାସା, "ଆସନ୍ନ ମୃତ୍ୟୁ ଜୀବର କର୍ତ୍ତବ୍ୟ କ'ଣ ?" ତାଙ୍କ ସମକ୍ଷରେ ମହାମୁନି ଶୁକଦେବଙ୍କର ଭାଗବତ ଚର୍ଚ୍ଚା ଛଳରେ କର୍ତ୍ତବ୍ୟ ନିର୍ଦ୍ଦେଶ । ପରୀକ୍ଷିତଙ୍କର କର୍ତ୍ତବ୍ୟ ଯେ କୌଣସି ମଣିଷର କର୍ତ୍ତବ୍ୟ । କୃଷ୍ଣଙ୍କର ଅବର୍ତ୍ତମାନରେ ଅନ୍ଧକାରମୟ ସୃଷ୍ଟିରେ ମାନବ ଅଂଧୀଭୂତ ହେବାକୁ ଲାଗିଲା । ପଥଭ୍ରଷ୍ଟ, ଦୁର୍ଦ୍ଦଶାଗ୍ରସ୍ତ ମାନବର ମଙ୍ଗଳ ପାଇଁ ମୁନି, ଋଷିମାନେ ନୈମିଷାରଣ୍ୟରେ ଏକତ୍ରିତ ହେଲେ । ସେମାନଙ୍କର ସିଦ୍ଧାନ୍ତ କ୍ରମେ ଭାଗବତ ହିଁ ସୃଷ୍ଟିର ଆଲୋକବର୍ତ୍ତିକାରୂପେ ପ୍ରଜ୍ୱଳିତ ହେବା ବିବେଚିତ ହେଲା । ତେଣୁ ଆସନ୍ନ କଳିକାଳରେ ରାଜା ପରୀକ୍ଷିତଙ୍କ ଶ୍ରୁତ ଭାଗବତ ବ୍ୟାସଦେବଙ୍କ ଦ୍ୱାରା ଲିପିବଦ୍ଧ ହେଲା । ପରବର୍ତ୍ତୀ କାଳରେ ସର୍ବସାଧାରଣଙ୍କ ଗ୍ରହଣ ନିମିତ୍ତ ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଅନୂଦିତ ମଧ୍ୟ ହେଲା ।

ଜୀବନ ପ୍ରତି, ଦାର ପୁତ୍ର, ବାନ୍ଧବ ଓ ଧନ ପ୍ରତି ମଣିଷ ମୋହଶୂନ୍ୟ ହେବାର କେତେଗୋଟି ଦୃଷ୍ଟାନ୍ତ ଶୁକଦେବ ମହାରାଜା ପରୀକ୍ଷିତଙ୍କ ସମକ୍ଷରେ ଦର୍ଶାଇଛନ୍ତି ।

ସୃଷ୍ଟିରେ ଘଟୁଥିବା ଘଟଣା ନିତ୍ୟନିୟତ ମଣିଷକୁ ପ୍ରଭାବିତ କରୁଥାଏ । ଗୁଡ଼ାଏ କରୁଣ ଦୃଶ୍ୟ ରାଜପୁତ୍ର ଗୌତମଙ୍କର ମନରେ ଐଶ୍ୱର୍ଯ୍ୟ ପ୍ରତି, ପ୍ରେମ ପ୍ରତି, ସୌନ୍ଦର୍ଯ୍ୟ ପ୍ରତି ଓ ଜୀବନ ପ୍ରତି ତୀବ୍ର ବିରାଗ ଆଣିଦେଇଥିଲା । ଫଳରେ ସେ ହୋଇଥିଲେ ଗୃହତ୍ୟାଗୀ ଚିରନ୍ତନତାର ସନ୍ଧାନରେ । ନଶ୍ୱରଶୀଳ, ଅନିତ୍ୟ ଶରୀରରେ ଚିରନ୍ତନ, ଶାଶ୍ୱତକୁ ଲାଭ କରିବାପାଇଁ ଆକୁଳ ଆକାଂକ୍ଷା ଦେଖା ଦେଇଥିଲା । ସେହିଭଳି ଥିଲେ ଅବଧୂତ । ସୃଷ୍ଟିର ଚବିଶ ଗୋଟି ଦୃଷ୍ଟାନ୍ତ ତାଙ୍କୁ ଜୀବନ ପ୍ରତି, ସ୍ତ୍ରୀପୁତ୍ର ପ୍ରତି, ବନ୍ଧୁ ଓ ଧନ ପ୍ରତି ନିସ୍ପୃହ କରି ଦେଇଥିଲା । ତେଣୁ ବନ୍ଧନହୀନ ଏଇ ମଣିଷ ସର୍ବଦା ଶାଶ୍ୱତ କରୁଣାର ପ୍ଳାବନରେ ଥିଲେ ଜ୍ୟୋତିଷ୍ମାନ ଓ ସଦାନନ୍ଦ । ସେ କୌଣସି ପଦାର୍ଥରେ ଆଶା କରୁ ନ ଥିଲେ ତେଣୁ ନୈରାଶ୍ୟର ଚିହ୍ନ ତାଙ୍କୁ ସ୍ପର୍ଶ କରୁ ନଥିଲା । ଯଦୁରାଜା ଅବଧୂତଙ୍କ ଏତାଦୃଶ ଆଚରଣରେ ବିସ୍ମିତ ହୋଇଯାଇଥିଲେ । କାରଣ.....

"ମୁକୁଟ ମଣ୍ଡିତ ରାଜଶିର
ନୁହଁଇ ଶାନ୍ତି ଆସ୍ପଦ ଆଶଙ୍କା ଭୟ ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର"

(କବି ମଧୁସୂଦନଙ୍କ "ଜୀବନ ଚିନ୍ତା")

ବା ସଂସ୍କୃତ କବିଙ୍କର—

"ଘଟା ନୃପାଣାଂ ଅଭିଷେକ କାଳେ
ସହାମ୍ଭସୈବା ପଦ ମୁଦ୍‌ଗିରନ୍ତି ।"

ରାଜାମାତ୍ରକେ ନାନା ଜଞ୍ଜାଳ ଓ ଚିନ୍ତାରେ ଆକ୍ରାନ୍ତ । ତେଣୁ ଜଣେ ନିଃସ୍ୱ, ବନ୍ଧୁହୀନ ଲୋକର ଆକଣ୍ଠ ଆନନ୍ଦ ଦେଖି ସେ ପ୍ରଶ୍ନ କରିଥିଲେ—"ହେ ମୁନି ! କିପରି ସଂସାରର ଭଲମନ୍ଦ ତୁମକୁ ପ୍ରଭାବିତ କରୁନାହିଁ ? ଗଙ୍ଗାର ଶୀତଳ ଜଳରେ ପ୍ରବିଷ୍ଟ ହସ୍ତୀକୁ ଯେପରି ଉତ୍ତାପ ବାଧେ ନାହିଁ ତୁମ୍ଭେ ସେହିଭଳି କେଉଁ ଅମୃତ ସ୍ପର୍ଶ ଲାଭ କରିଛ ଯେ କୌଣସି କ୍ଳେଶ ତୁମକୁ ଛୁଇଁପାରୁ ନାହିଁ ?" ଏଠାରେ ଅବଧୂତ ତାଙ୍କର ଗୁରୁମାନଙ୍କର ଅବତାରଣା କରିଛନ୍ତି । ତାର ସହସ୍ର ସହସ୍ର ବର୍ଷ ପରେ ଆଜି ବିଂଶ ଶତାବ୍ଦୀରେ ସେ ସବୁର ପୁନରାଲୋଚନା ଅତ୍ୟନ୍ତ ଆବଶ୍ୟକ ହୋଇ ପଡ଼ିଛି । ମୃତ୍ୟୁମୁଖୀ ମାନବ ସମାଜର ମଙ୍ଗଳ ନିମିତ୍ତ ଅମୃତ ଆନନ୍ଦର ବାରିସିଂଚନ ହୋଇପଡ଼ିଛି ଅପରିହାର୍ଯ୍ୟ । ଆଜି ଯେତେବେଳେ ମଣିଷ ମଣିଷ ମଧ୍ୟରେ ଦୂରତା ବଢ଼ି ଉଠିଛି, ନିଜ ଚାରିପାଖରେ ଏକ ସ୍ୱାର୍ଥର ଖୋଳପା ଗଢ଼ି ମଣିଷ ରହୁଛି ତା ଭିତରେ ଆଶ୍ରୟ, ଧନମଦରେ ମତ୍ତ ହୋଇ ସେ ତା ସାମ୍ନାରେ ପଡ଼ିଥିବା ଉପବାସୀ ନିରନ୍ନ ମନିଷ ପ୍ରତି ଦୃଷ୍ଟିପାତ କରୁନାହିଁ, ବ୍ୟକ୍ତି ଜୀବନର ବୈଷମ୍ୟ ସହିତ ଜାତିଜାତି ମଧ୍ୟରେ ଶତ୍ରୁତା ଓ ଆପଣାର ଡିଣ୍ଡିମ ବଜାଇବାକୁ, ଜୟକାର କରିବାକୁ, କୋଟି କୋଟି

ନିରୀହ ମଣିଷକୁ ଦଳି ଦେବାକୁ, ତାକୁ ଲୁଣ୍ଠିତ ଓ ଧର୍ଷିତ କରିବାପାଇଁ ସେ ପଶ୍ଚାତପଦ ହେଉନାହିଁ, ସେତିକିବେଳେ ମଣିଷର ନିର୍ଲିପ୍ତତା, ବିଶ୍ୱମୈତ୍ରୀଭାବ ପ୍ରତି ତଥା ଏଇ ଅବଧୂତଙ୍କ ଜୀବନ ଦର୍ଶନ ପ୍ରତି ଧ୍ୟାନ ଦେବାର ସମୟ ଆସିଛି । ଅବଧୂତଙ୍କ ଜୀବନ ଦର୍ଶନ ପ୍ରାଚୀନ ଭାରତୀୟ ମୁନିଋଷିଙ୍କ ଜୀବନଦର୍ଶନର ପ୍ରତିନିଧି । ମଣିଷର ମନରୁ ବୈରଭାବ, ଈର୍ଷା, ଘୃଣାର ବିଲୋପ ପାଇଁ, ସମାଜରୁ ଅସୂୟା, ଅସହିଷ୍ଣୁତା ଦୂରକରି ମଣିଷକୁ ଏକ ଚିରଶାନ୍ତିମୟ ସଂସାରର ଅଧିବାସୀ କରିବାକୁ, ପ୍ରାପ୍ତିପାଇଁ ଆକୁଳତା ଓ ଅପ୍ରାପ୍ତିର ଗ୍ଳାନିରୁ ତାକୁ ରକ୍ଷା କରିବା ପାଇଁ ଏପ୍ରକାର ଦର୍ଶନରେ କି ମହିମାମୟ ପ୍ରଚେଷ୍ଟା କରାଯାଇଛି ତାହା ଏ ଯୁଗର ମଣିଷକୁ ବିସ୍ମିତ କରେ ।

ତାଙ୍କର ପ୍ରଥମ ଗୁରୁ ପୃଥିବୀ—ଯେ ବିନା ଆପତ୍ତି ଅଭିଯୋଗରେ ସହିଯାଏ ସୃଷ୍ଟିର ଗୁରୁଭାର । ତାକୁ ମଣିଷ କର୍ଷଣ ଓ ଖନନ କରେ, କିନ୍ତୁ ସେ ସହିଷ୍ଣୁତାରେ ହିଁ ଗଢା, ମୂର୍ତ୍ତିମତୀ କ୍ଷମା । ଅବଧୂତ ଏଇ ଅବିଚଳ ସହିଷ୍ଣୁତା ଶିଖିଲେ ମାଟି ଠାରୁ । କବି ଗଡନାୟକଙ୍କ ଭାଷାରେ ମାଟିର ଆତ୍ମପରିଚୟ "ଅଚଳା ମୁଁ, ସର୍ବଂସହା ମୁଁ ।" ପୁଣି ଏଇ ପୃଥିବୀ ପୃଷ୍ଠର ବୃକ୍ଷଟି—ନିଜପାଇଁ ତ ସେ ବଂଚି ନ ଥାଏ । ଅଜସ୍ର ଫଳଭାରରେ ଯେ ନତ ହୁଏ, ପ୍ରାଣୀଙ୍କ ହିତରେ ତାହା ଅଜାଡି ଦିଏ । ସୂର୍ଯ୍ୟର ପ୍ରଖର ଉତ୍ତାପ ସହି ସୁଶୀତଳ ଛାୟାଦାନ କରେ । ନିଜର ଛାୟାକୁ ସେ କୁଣ୍ଠିତ ଭାବରେ ଲୁଚାଇ ଦିଏ ନାହିଁ, ପ୍ରସାରିତ କରିଦେଇଥାଏ ତାପିତ ଜୀବଜଗତର ଆଶ୍ୱସ୍ତି ପାଇଁ । ଅଥଚ ବୁଦ୍ଧି ବିବେକଯୁକ୍ତ ସୃଷ୍ଟିର ଶ୍ରେଷ୍ଠ ଜୀବ ମଣିଷ ସ୍ୱାର୍ଥପରତାର ଚରମ ନିଦର୍ଶନ ଦେଖାଇଥାଏ ଆତ୍ମପୂଜା କରି । ପର୍ବତ—ସେ ବି ପ୍ରଚୁର ଫଳ, ଛାୟା ଓ ନିବାସ (ଗୁମ୍ଫା) ଓ ଔଷଧ ଜୀବ ଜଗତକୁ ଆକାତରରେ ଦାନକରେ । ତାର ସମଗ୍ର ସତ୍ତା ହିଁ ଯେପରି ପ୍ରାଣୀର ମଙ୍ଗଳପାଇଁ ତିଷ୍ଠି ରହିଛି ।

ଅବଧୂତଙ୍କର ଚବିଶଗୁରୁ ମଧ୍ୟରେ ଦ୍ୱିତୀୟ ହେଉଛି ପବନ-ପ୍ରାଣୀର ଶରୀର ଭିତରେ ଓ ବାହାରେ ପୂରି ରହିଛି , ପ୍ରାଣୀଜଗତକୁ ବଂଚାଇ ରଖିଛି ଅଥଚ ତା ଉପରେ କାହାରି ସ୍ୱତ୍ୱ ନାହିଁ । ଦର୍ଶନେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ ଓ ରସନେନ୍ଦ୍ରିୟ ଦ୍ୱାରା ସେ ଧରାଦିଏ ନାହିଁ । ସମସ୍ତଙ୍କର ପ୍ରାଣଠାରୁ ବଳି ପ୍ରିୟ କିନ୍ତୁ କାହାରି ହାତମୁଠାରେ ରହେ ନାହିଁ । ଏତେ ନିକଟର ପୁଣି ଏତେ ଦୂରର । ମଣିଷ ସେହିଭଳି ନିର୍ଲିପ୍ତତା ଶିକ୍ଷାକରିପାରେ । ହୋମକୁଣ୍ଡର ଅଗ୍ନି ସୁବାସିତ ଘୃତାହାର କରେ, ଶ୍ମଶାନରେ ରୋଗାକ୍ରାନ୍ତ, ପଚା ଶରୀରକୁ ବିଚରିଯାଏ । କିନ୍ତୁ ସେ ପୂର୍ବପରି ଶୁଦ୍ଧ ଓ ମୌଳିକ । ସୁଗନ୍ଧ ଓ ଦୁର୍ଗନ୍ଧକୁ ସେ ନିଜର କରି ରଖେ ନାହିଁ । ଏଇ କର୍ମରେ ବିକାରହୀନତା ଓ ଅନାସକ୍ତି ଯୋଗୀ ଶିକ୍ଷାକଲେ ଅଗ୍ନିଠାରୁ । ତାପରେ ଆସେ ପ୍ରଶାନ୍ତ, ପରିବ୍ୟାପ୍ତ ଆକାଶ । କେତେବେଳେ ମେଘର ଗୁରୁଗର୍ଜ୍ଜନରେ ଭୟଙ୍କର, କେତେବେଳେ ଜ୍ୟୋତ୍ସ୍ନାର୍ଚ୍ଚିତ ଆହ୍ଲାଦକର ତାର ରୂପ । ସେଇ ବିଶାଳ ଆକାଶ ସାମାନ୍ୟ କେତେଖଣ୍ଡ ମେଘରେ ଦ ଟୁଣି ଢାଂକି ହୋଇପଡେ । କିନ୍ତୁ ସତରେ କ'ଣ ମେଘର ଶକ୍ତି ରହିଛି ଏଇ ଅସୀମ ଆକାଶକୁ ଆଚ୍ଛାଦିତ କରିଦେବା ପାଇଁ ? ଅସୀମର ସସୀମ ନିକଟରେ କି ଅନନ୍ୟ ଆତ୍ମସମର୍ପଣ ? ଜ୍ଞାନର ଅତଳ ଗଭୀରତା ଆସିଲେ ହିଁ ମଣିଷ ନିଜର ବଡ ପଣିଆକୁ ଭୁଲିଯାଏ, ନମ୍ର ହୋଇପଡେ । ଆକାଶର ଏଇ ଉଦାର ବଦାନ୍ୟତାରେ ଅବଧୂତ ନତମସ୍ତକ ହୋଇ ପଡିଥିଲେ ।

ଆକାଶରେ ପ୍ରଜ୍ଜ୍ୱଳିତ ସୂର୍ଯ୍ୟ—ବିଭିନ୍ନ ସ୍ଥାନରେ ତା'ର ପ୍ରତିଫଳନ; ନଦୀ ଜଳରେ, ପୁଷ୍କରିଣୀରେ ଓ ଜଳକୁଣ୍ଡ ମଧ୍ୟରେ । ଅଜ୍ଞାନତାକୁ ବିଭିନ୍ନ ଓ ବହୁ ବିଧ ରୂପରେ ଦେଖେ କିନ୍ତୁ ସୂର୍ଯ୍ୟ ହେଉଛି ଗୋଟିଏ । ଏହା ଆତ୍ମାର ଏକକତ୍ୱ ଓ ଅଭିନ୍ନତାକୁ ପ୍ରକାଶ କରୁଥିବାର ଅବଧୂତ ଅବଗତ ହେଲେ । ୧ । ପ୍ରତ୍ୟେକ ଶରୀର ପ୍ରତିବିମ୍ବ ସୃଷ୍ଟିକାରୀ ଦର୍ପଣଭଳି ଓ ଈଶ୍ୱରଙ୍କର ଅଂଶ ବିଶେଷ ଆତ୍ମାଭଳି ସୂର୍ଯ୍ୟ । ଏହି ଜ୍ଞାନରୁ ଆତ୍ମବତ୍ ଜଗତକୁ ଜ୍ଞାନ କରିବା ସମ୍ଭବ ହୁଏ । ବୋଧହୁଏ ମାନବ ସମାଜର ମୈତ୍ରୀ ଓ କଲ୍ୟାଣପାଇଁ ତାର ଦୀର୍ଘଜୀବନ ପାଇଁ ଏହି ଦର୍ଶନଟି (ପ୍ରତ୍ୟେକ ମଣିଷର ଶରୀରରେ ଏକ ସତ୍ତାର ପ୍ରତିଫଳନ, ମୁଁ ଯିଏ ସେ ମଧ୍ୟ ସେଇ, ଆମେ ଏକ) ମଣିଷ ମଣିଷ ଭିତରେ ଥିବା ଭେଦ, ଜାତି ଜାତି, ଦେଶ ଦେଶ ମଧ୍ୟରେ ଥିବା ଭେଦର ଯେଉଁ ବିରାଟ, ଉତ୍କଟ ଓ ଶଙ୍କାକୁଳ ସମସ୍ୟା ଦେଖା ଦେଇଛି, ସେସବୁକୁ ମୁହୂର୍ତ୍ତକେ ସମାଧାନ କରିପାରେ । ସୂର୍ଯ୍ୟ ପୃଥିବୀରୁ ଜଳକୁ ବାଷ୍ପାକାରରେ ଗ୍ରହଣ କରେ, ପୁଣି ଆବଶ୍ୟକ କାଳରେ ପୃଥିବୀକୁ ଅଜାଡ଼ି ଦେଇଥାଏ । ୨ । ନିଏ ଖାଲି ଉପଯୁକ୍ତ ସମୟରେ ଅଜାଡ଼ି ଦେବାପାଇଁ, ନିଜର ଭଣ୍ଡାର ବଢ଼ାଇବା ପାଇଁ ନୁହେଁ । ଧନଶାଳୀର କର୍ତ୍ତବ୍ୟ ଧନକୁ ଉଚିତ ପାତ୍ରରେ ଦାନ କରିବା । ଧନ ତ ଅସ୍ଥିର, ସେ ହାତରୁ ହାତକୁ ଘୁରୁଥାଏ । କାହା ହାତରେ ସ୍ଥିର ରହେ ନାହିଁ । ଋଗ୍‌ବେଦରେ ଏହିକଥା ରହିଛି । ଗ୍ରହଣ ଓ ବଣ୍ଟନର ନୀତି ନିର୍ଦ୍ଧାରଣ କରିଛନ୍ତି ପରମପୁରୁଷ ମାନବର ସାମୂହିକ କଲ୍ୟାଣ ପାଇଁ ।

> "ପୃଣୀୟା ଦିନ୍ନା ଧମାନାୟ ତବ୍ୟାନ୍
>
> ଦ୍ରାଘୀୟାଂସ ମନୁ ପଶ୍ୟତେପନ୍ଥାମ୍
>
> ଓହି ବର୍ତ୍ତନ୍ତେ ରଥ୍ୟେବ ଚକ୍ରା
>
> ନ୍ୟମନ୍ୟ ମୁପତିଷ୍ଠନ୍ତ ରାୟଃ" । ୩ ।

ଏଇ ଦିଆ ନିଆର ରୀତିଟି ଯଦି ମଣିଷ ସମାଜରେ ପ୍ରଚଳିତ ହୁଅନ୍ତା ତେବେ ଶୋଷକ, ଶୋଷିତଶ୍ରେଣୀ ରହନ୍ତା ନାହିଁ; ଧନୀ ଦରିଦ୍ରର ଭେଦ ଲୋପ ହୁଅନ୍ତା । ସାମ୍ୟବାଦର ନୀତି ଏହାରି ଉପରେ ପର୍ଯ୍ୟବସିତ । ସାଧାରଣ ମଣିଷ ଠାରୁ ଗ୍ରହଣ କରି ଜଣେ ଧନୀ ହୁଏ ଏବଂ ସେ ମଣିଷର ଆବଶ୍ୟକ କାଳରେ ଯଦି ଦାନ କରିବାକୁ ଆଗେଇ ଆସେ ତେବେ ସମାଜରେ ଏକ ବିରାଟ ସମସ୍ୟାର ସମାଧାନ ଆପେ ଆପେ ହୋଇ ଯାଆନ୍ତା ।

ଆକାଶରେ ଚନ୍ଦ୍ର ସବୁବେଳେ ଉପସ୍ଥିତ ଥାଏ; କିନ୍ତୁ କେଉଁଦିନ ନୀଳ ସମୁଦ୍ରରେ ରୂପାର ନୌକାଟିଏ ପରି ଭାସିଯାଉଥାଏ ତ କେଉଁଦିନ ଧଳା ଲାଉଟାଏ ଭଳି ଆକାଶର କୋଣରେ ଝୁଲୁଥାଏ । ପୁଣି ଦିନେ ଦିନେ ଆଦୌ ଦେଖାଦିଏ ନାହିଁ । ସେହିଭଳି ଆତ୍ମା, ସବୁବେଳେ ବିଦ୍ୟମାନ, କିନ୍ତୁ ଜନ୍ମ, ଜରା, ମୃତ୍ୟୁ ଇତ୍ୟାଦି ଦୈହିକ ଅବସ୍ଥାମାନଙ୍କ ଦ୍ୱାରା ନିଜକୁ ପ୍ରତୀତ କରାଏ । ସାଧାରଣ

---

୧ । A study of Bhagabat Puran— P 584

୨ । ଭାଗବତ—୧୧ଶ ସ୍କନ୍ଧ— ଜଗନ୍ନାଥ ଦାସ

୩ । ଋଗ୍‌ବେଦ, ୧୦ମ ମଣ୍ଡଳ ୧୧୭।୫

ଲୋକ ଭାବେ ଯେ ଜନ୍ମ, ଜରା, ମୃତ୍ୟୁ ଦେଇ ଆତ୍ମା ବି ଗତି କରୁଛି । କିନ୍ତୁ ଯୋଗୀ ଅବଧୂତ ଆତ୍ମାର ଏଇ ଅବିଚଳ, ଅପରିବର୍ତ୍ତନୀୟ ସର୍ବଦା ବିଦ୍ୟମାନ ଅସ୍ତିତ୍ୱକୁ ହୃଦୟଙ୍ଗମ କରି ଗୁରୁରୂପେ ଚନ୍ଦ୍ରକୁ ଗ୍ରହଣ କଲେ । ସମୁଦ୍ରପରି ସ୍ଥିର ଓ ଗମ୍ଭୀର ହେବା ମାନବର ଆନ୍ତରିକ ସାଧୁତାର ଚିହ୍ନ । ସମୁଦ୍ର ବନ୍ୟାପୁଷ୍ଟ ନଦୀଜଳରେ ଉଚ୍ଛ୍ୱସିତ ହୋଇଉଠେ ନାହିଁ କି ଗ୍ରୀଷ୍ମରେ ଶୁଷ୍କନଦୀର କ୍ରମକ୍ଷୟିଷ୍ଣୁ ଜଳଧାରରେ ବ୍ୟଥିତ ହୋଇ ଶୁଖିଯାଏ ନାହିଁ । ତାର ଗଭୀରତା ଅକଳନ ହେତୁ ଶାନ୍ତି ଅବ୍ୟାହତ ରହିଥାଏ । ଠିକ୍ ସେହିପରି ଅଜଗର—

"ଅଳପେ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ" ।।

ଅଜଗର ଖାଦ୍ୟ ପାଇଁ ବ୍ୟାକୁଳ ହୋଇ ଏଣେତେଣେ ଘୁରେ ନାହିଁ । ଯାହା ଯେଉଁଦିନ ମିଳେ ଖାଏ ଓ ତୃପ୍ତ ରହେ । ଏତେବଡ଼ ବିଷଧର ଜନ୍ତୁ, ଯେକି ମଣିଷ ଓ ଜୀବ, ବନ୍ୟଚର ଗୁଡାଙ୍କୁ ଗୋଟା ଗୋଟା ଗିଳିପକାଇ ପାରେ, ସେ ପୁଣି ଉପବାସ ରହେ । ଅପ୍ରାପ୍ତ ବସ୍ତୁପାଇଁ ଆଗ୍ରହ ତ୍ୟାଗକରି ଲବ୍‌ଧ ବସ୍ତୁରେ ସନ୍ତୁଷ୍ଟ ରହିବାର ଗୁଣ ଶିକ୍ଷାକଲେ ତାହାଠାରୁ ଅବଧୂତ । କରିତ୍କର୍ମା ବ୍ୟକ୍ତି ମଧ୍ୟ ସାଂସାରିକ ଦୁଃଖ, କଷ୍ଟକୁ ସହିଯିବାକୁ ବାଧ୍ୟହୁଏ । ଏହି ଚିତ୍ର ଜଗନ୍ନାଥଙ୍କ ଭାଷାରେ—

"କର୍ମ କଷଣ ଦେହ ସହେ । ଅରଣ୍ୟ ଅଜଗର ପ୍ରାୟେ" ।।

ଅପ୍ରାପ୍ତ ବସ୍ତୁର ଆଶା ଯୁଗେ ଯୁଗେ ମଣିଷକୁ ପ୍ରଲୁବ୍‌ଧ କରିଛି କିନ୍ତୁ ଅଜଗରର ଦୀକ୍ଷା ବିପରୀତ । ସେଥିପାଇଁ ସେ ଅବଧୂତଙ୍କ ଗୁରୁ । ପୁନଶ୍ଚ ପ୍ରାଣୀମାନଙ୍କ ଭିତରେ ସଞ୍ଚିବାରେ ସବୁଠୁ ଧୁରନ୍ଧର ମହୁମାଛି ; କିନ୍ତୁ ତାର ସଞ୍ଚିତ ମହୁ ସେ ଭୋଗକରେ ନାହିଁ । ନିଜ ଆବଶ୍ୟକତା ଠାରୁ ଅଧିକ ସେ ସଞ୍ଚୟ କରେ ଅନ୍ୟ ପାଇଁ । ତେଣୁ ତାର ଶ୍ରମ ଧନ୍ୟହୁଏ । ଯଦି ମଣିଷ ନିଜ ଆବଶ୍ୟକତାଠାରୁ ଅଧିକ ପର ପାଇଁ ରଖନ୍ତା, ତେବେ ସମାଜରୁ ବହୁବ୍ୟାଧି ଓ କଳଙ୍କ ଲୋପ ପାଇ ଯାଆନ୍ତା । କଳାବଜାର, ଅସାଧୁ ଉପାୟରେ ଧନ ଅର୍ଜନ କରିବାକୁ ଲୋକ ଇଚ୍ଛା କରନ୍ତା ନାହିଁ । କିନ୍ତୁ ନିଜ ପାଇଁ ସଞ୍ଚୟ କରୁଥିବା ହେତୁ ସେ ଯେ କୌଣସି ପ୍ରକାର ଧପ୍‌ପାବାଜି କରିବାକୁ, ଦେଶବାସୀ ଭାଇଙ୍କର ଓ ମାତୃଭୂମିର କ୍ଷତି କରିବାକୁ ପଶ୍ଚାତ୍‌ପଦ ହେଉନାହିଁ । ଏଠାରେ ଆଉ ଏକ ଗୁରୁ ମନେପଡ଼େ—ସେ ମଧୁ ହରଣକାରୀ । ସଞ୍ଚୟକୁ ସେ ହରଣ କରେ, କେବଳ ହରଣ କରେନା ମହୁମାଛିଙ୍କୁ ନିଆଁରେ ପୋଡ଼ିଦିଏ ଓ ମଧୁଚକ୍ର ଭାଙ୍ଗି ମଧୁ ସଂଗ୍ରହ କରିନିଏ । ସଞ୍ଚୟକାରୀ ମୃତ୍ୟୁ ଲାଭକରେ ବା ବାସହୀନ ହୋଇ ଦୁଃଖପାଏ । ସବୁପ୍ରକାର ସଞ୍ଚୟର ପରିଣତି ଏଇଆ—ଅବଧୂତ ବିଶ୍ୱାସ କଲେ, ତେଣୁ ଉଭୟେ ମଧୁମକ୍ଷୀ ଓ ମଧୁହରଣକାରୀଙ୍କୁ ଗୁରୁ ରୂପେ ସେ ଗ୍ରହଣ କରିନେଲେ । ଅତିବଡୀ ଜଗନ୍ନାଥଙ୍କ ଭାଷାରେ—

"ନ ଦେଇ ନ ଖାଇ ସଞ୍ଚଇ । ତାହାର ମୁଖେ ଅଗ୍ନି ଦେଇ" ।।

ଏହି ଉକ୍ତି ବହୁ ନିର୍ଦ୍ଧନ ସାଧୁଜନଙ୍କର ସାନ୍ତ୍ୱନାର ବାଣୀ ହୋଇଥାଏ ।

ତାପରେ ଆସେ ଅବଧୂତଙ୍କର ଲୋକପ୍ରିୟ ଗୁରୁ କପୋତ ପକ୍ଷୀ । ଏହି ଉପାଖ୍ୟାନରେ ସାଂସାରିକ ମୋହ ମାୟାପୂର୍ଣ୍ଣ ସ୍ୱାଭାବିକ ଜୀବନର ଏକ ଅସହାୟ କରୁଣ ଚିତ୍ର ଫୁଟି ଉଠିଛି । କପୋତ ପକ୍ଷୀଟିର ମୋହ, ତାର ପତ୍ନୀ, ପୁତ୍ରର

ମମତା ତାଙ୍କୁ ଶୋକ ଓ ମୃତ୍ୟୁ ଆଡକୁ ଟାଣି ନେଉଛି । ମଣିଷ ଯେତେ ଆସକ୍ତ ହୋଇ ପଡୁଛି, ସେତେ ଶୋକାର୍ତ୍ତ ହେଉଛି—ଯାହାର ଧରି ରଖିବାର ପ୍ରଚେଷ୍ଟା ନାହିଁ, ହରାଇବାର ଶୋକ ମଧ୍ୟ ତାହାର ନାହିଁ । ତେଣୁ ପତ୍ନୀ, ପୁତ୍ର ରୂପକ ସାଂସାରିକ ମାୟାପାଶଠୁଁ ଦୂରେଇ ରହି ଅବଧୂତ ହରାଇବାର ଦାରୁଣ ଶୋକ ଅନୁଭବ କରିନାହାନ୍ତି । ସାଂସାରିକ ଦୁଃଖ, ବ୍ୟର୍ଥତାକୁ ତାଙ୍କ ଆଗରେ ଖୋଲି ଦେଇଥିବା ମୃତ୍ୟୁମୁଖୀ କପୋତ ପକ୍ଷୀଟିକୁ ତେଣୁ ସେ ଗୁରୁରୂପେ ଅନ୍ତରରେ ପୂଜା କରିଛନ୍ତି । ଅବଧୂତଙ୍କର ବହୁଜନ ବିଦିତ ଗୁରୁ ପିଙ୍ଗଳା । ରାଜର୍ଷି ଜନକ-ଙ୍କର ରାଜତ୍ୱରେ ବିଦେହନଗରର ରୂପସୀ ବେଶ୍ୟା ପିଙ୍ଗଳା । ସୁବାସିତ, ସୁଶୋଭିତ ହୋଇ ସାରାରାତି ଅନାଇଁ ବସିଛି । କେତେବେଳେ ଆସିବ ତା'ର ପ୍ରେମିକ ଧନାପୁତ୍ର—କି ସୁନ୍ଦର, ମହାର୍ଘ ଉପହାର ଆଣିଥିବ ତାଆପାଇଁ । କିନ୍ତୁ ପ୍ରହର ପରେ ପ୍ରହର ବିତିଯାଇଛି—ଧନାପୁତ୍ରର ଦେଖାନାହିଁ ! ହଠାତ୍ ପିଙ୍ଗଳାର ଭାବାନ୍ତର ଆସିଛି । ସେ ନିଜକୁ ନିଜେ କହିଛି "ପିଙ୍ଗଳା, ତୋର ସ୍ୱାମୀ, ପ୍ରାଣର ପ୍ରିୟତମ ପର ସେ, ଯିଏ ତୋତେ ଏଇ ମୂତ୍ର, ପୁରୀଷମୟ, ରକ୍ତ, ମାଂସ, ହାଡ଼ଶିରା ଯୁକ୍ତ ଗୃହରେ ସ୍ଥାପିତ କରିଛନ୍ତି । ତୁ ପୁଣି କାହାକୁ ରାହି ବସିଛୁ ? ତାଙ୍କୁ ହିଁ ତୁ ପ୍ରତୀକ୍ଷା କରି ବସ୍ । ସେ ତ ତୋତେ ଚିରନ୍ତନ ଆନନ୍ଦ ଦେଇ ପାରିବେ ଓ ସବୁ ଅଭିଳାଷକୁ ଚରିତାର୍ଥ କରିପାରିବେ । କବି ଜଗନ୍ନାଥଙ୍କ ଭାଷାରେ—

"ନିକଟେ ଅଛି ମୋର ଭର୍ତ୍ତା । ସର୍ବ ସଂପଦ ସୁଖ ଦାତା " ।୬।

ଆଲୋଚକ ସିହ୍ନାଙ୍କ ଭାଷାରେ "Why not seek Isvra the eternal giver of all pleasures and desires ?" ୭ । ଉତ୍କଣ୍ଠା ରହିତ ପିଙ୍ଗଳା ପରମ ଆତ୍ମସଂତୋଷରେ ନିଦ୍ରାଯାଇଛି । ଅବଧୂତ ତାଙ୍କୁ ପ୍ରଣାମ କରିଛନ୍ତି ଓ ତାଠାରୁ ଶିକ୍ଷା କରିଛନ୍ତି ଆତ୍ମପ୍ରେମ ଓ ଆଶାତ୍ୟାଗ । ଆଲୋଚକ ଅଚିନ୍ତ୍ୟ ସେନଗୁପ୍ତଙ୍କ ଲେଖନୀରେ ପିଙ୍ଗଳାର ଉକ୍ତି "ଦାଓ ଆମାକେ ଏଇ ଆଶା ରହିତ ତୋମାର ଯଦି ଅଂଶ ନେଇ, ଆମାର ଓ ଅଂଶ ନେଇ ।" (୮) ସାଂସାରିକ ଜୀବନରେ ନିର୍ଲିପ୍ତ ରହିବା ପାଇଁ ଅବଧୂତ ସଂଗରହିତ ହେବାର ଦୀକ୍ଷା ନେଇଥିଲେ । ଏ କ୍ଷେତ୍ରରେ ତାଙ୍କର ଗୁରୁ (ଗୁର୍ବୀ) ହେଉଛି ଅନୂଢ଼ାକନ୍ୟା । ଅତିବଡ଼ୀ ଜଗନ୍ନାଥ ତାକୁ ବ୍ରାହ୍ମଣକୁମାରୀ ଭାବେ ଚିତ୍ରିତ କରିଛନ୍ତି । ବିବାହ ନିମନ୍ତେ କନ୍ୟା ଦେଖି ଆସିଛନ୍ତି ବରପକ୍ଷର ଲୋକେ । ସେମାନଙ୍କ ଚର୍ଚ୍ଚାପାଇଁ କନ୍ୟା ଚାଉଳ ଗଣ୍ଡେ କରିବାକୁ ଗଲା । ଚାଉଳ ପାଛୁଡ଼ୁ ପାଛୁଡ଼ୁ (ବା ଧାନ କୁଟୁ କୁଟୁ ) ହାତର କାଚ ଦୁଇମୁଠା ରୁଣୁଝୁଣୁ କରିବାକୁ ଲାଗିଲା । ନିକଟରେ ଘରେ ବସିଛନ୍ତି କୁଣିଆ । ଝିଅଟି ସ୍ୱାଭାବିକ ଲଜ୍ଜିତ ହେଲା । କେତେପଟି କାଚ ଓହ୍ଲାଇ ରଖିଲା—ପୁଣି ସେଇ ରୁଣୁଝୁଣୁ ଶବ୍ଦ । ଏଥର ଝିଅଟି ପଟେ ପଟେ ମାତ୍ର କାଚ ରଖି ବାକିତକ କାଢ଼ିଦେଇ ଦେଲା । ତାପରେ ନୀରବରେ ତା କାମକରି ଚାଲିଲା । ଅବଧୂତ ତେଣୁ ଏକାକୀତ୍ୱ ଓ ନିର୍ଜ୍ଜନତାକୁ ବରଣ କରିନେଲେ ଓ ଯଦୁରାଜାଙ୍କୁ ଜଣାଇଲେ "କୁମାରୀ ହାତର ପଟେ କାଚ ଭଳି ଏକା ଏକା ରହ ।" କାରଣ

---

୬ । ଭାଗବତ ୧୧ଶ ସ୍କନ୍ଧ ପୃ ୬୧

୭ । A study of Bhagabat Puran—by P. N. Sinha page—583

୮ । କବି ରାମକୃଷ୍ଣ—ଅଃ କୁଃ ସେନଗୁପ୍ତ ।

"ଯହିଁ ଅନେକ ସଂଗମିଳି ଅବଶ୍ୟ ଉପୁଜଇ କଳି ।" ।୯।

ସନ୍ନ୍ୟାସୀ ବିନା ଦ୍ୱିଧାରେ ବଚିନେଇଥିବା ନିଃସଙ୍ଗତାକୁ ଦେଖି ଏ ଯୁଗର ମଣିଷ ନିଜକୁ ଅସହାୟ ମନେକରୁଛି । ଆର୍ଥନୀତିକ ଦୁନିଆର ପ୍ରତିଯୋଗିତାରେ ମଣିଷ ହୋଇପଡ଼ିଛି ଏକାନ୍ତ ନିଃସଙ୍ଗ । ତାର ଅତି ଆତ୍ମୀୟ, ବନ୍ଧୁ, ସହୋଦର ମଧ୍ୟ ତା'ର ନୁହନ୍ତି । ଏଥିପାଇଁ ସଚେତନ ମଣିଷ ବିଳାପକରି ଉଠୁଛି । ନିଃସଙ୍ଗତାର, ନିର୍ଜନତାର ଜ୍ୱାଳା ସେ ସହିପାରୁ ନାହିଁ । ଏତିକିବେଳେ ମନେପଡେ Cowperଙ୍କ କବିତାର ଅନୁବାଦ, ମଧୁସୂଦନ ରାଓଙ୍କ 'ନିର୍ବାସିତର ବିଳାପ' କେତୋଟି ଧାଡ଼ି "କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର ଯାର ପ୍ରାପତି ଯୋଗୁଁ ଦେବତା ନର ।"

ବା ଗୋପବନ୍ଧୁଙ୍କର "ଅବନ୍ଧୁ ଜୀବନ ଅସହ୍ୟ ମହୀ
ଦେହଧରି କିଏ ପାରିଛି ସହି ।"

ଏ ସବୁରେ ବନ୍ଧୁତା ଓ ପ୍ରେମ, ମୈତ୍ରୀର ଜୟଗାନ କରାଯାଇଛି । କିନ୍ତୁ ବନ୍ଧୁତା ଯଦି ମୈତ୍ରୀର ନହୁଏ, ଏକାନ୍ତ ଆତ୍ମୀୟତାର ନହୁଏ ତେବେ ଈର୍ଷାକାତର, ବିବଦମାନ ଭଣ୍ଡ ବନ୍ଧୁତାଠାରୁ ଅବଧୂତଙ୍କର ବରଣୀୟ ନିଃସଂଗତା ମଣିଷ ପକ୍ଷରେ ଅଧିକ ଗ୍ରହଣଯୋଗ୍ୟ । କିନ୍ତୁ ସନ୍ନ୍ୟାସୀ ନିର୍ବିକାର ଚିତ୍ତରେ ଯେଉଁ ପଥ ବରଣ କରିନିଏ, ସଂସାରୀ ପାଇଁ ଏହା କେତେ ବେଶୀ ଆୟାସ ସାଧ୍ୟ ତାହା ସହଜରେ କଳ୍ପନା କରି ହେବ ନାହିଁ ।

ଜଳ ଏକ ମହାନ ତତ୍ତ୍ୱ ଶିକ୍ଷା ଦେଇଛି ଯୋଗୀ ଅବଧୂତଙ୍କୁ । ଜଳ ସର୍ବଦା ପାତ୍ରର ଆକାର ଧାରଣ କରିଥାଏ । ନିଜ ଆକାରର ସ୍ୱାତଂତ୍ର୍ୟ ପାଇଁ ତାର କୌଣସି ଗର୍ବ ବା ଅହଂକାର ନାହିଁ । ଜଳ ସ୍ୱଚ୍ଛ ଓ ମଧୁର ପାନୀୟରୂପେ ପ୍ରାଣୀର ଜୀବନ ରକ୍ଷା କରେ । ତେଣୁ ଏଇ ସ୍ୱଚ୍ଛତା, ଗ୍ରହଣଶୀଳତା (areeability) ଓ ମଧୁରତା ନିଜ ବ୍ୟକ୍ତିତ୍ୱର ସମ୍ପଦରୂପେ ଗ୍ରହଣ କରିନେଲେ ସନ୍ନ୍ୟାସୀ ଅବଧୂତ ।

ଇନ୍ଦ୍ରିୟଲାଳସା ଓ ଦାରସଂଗଲିପ୍ସା ମାନବାତ୍ମାର ଅଧୋଗତିର ମୂଳକାରଣ । ନାରୀର ମୋହ ମଣିଷକୁ ସବୁପ୍ରକାର ସାଂସାରିକ ବନ୍ଧନରେ ପକାଇଦିଏ ଓ ବହୁ ଯତିଙ୍କର ଆଜୀବନ ତପସ୍ୟା ମୁହୂର୍ତ୍ତକେ ନାରୀସ୍ପର୍ଶରେ ବିଫଳ ହୋଇଯାଏ । ମନୋବିଜ୍ଞାନୀଙ୍କ ମତରେ Man by nature is polygamous. ଏହି ନାରୀର କାମନା ମଣିଷ ମନରେ ଯେତେ ପ୍ରବଳ ତା'ର ଦୁଃଖ ଓ ହତାଶା ସେତେ ଅଧିକ । ଏ ବିଷୟର ସତ୍ୟତା ପରୀକ୍ଷା କରିବାକୁ ଜଗତରୁ କେତେଗୁଡ଼ିଏ ଉଦାହରଣ ଆଣିଛନ୍ତି ଅବଧୂତ । ହାତୀକୁ ଧରିବାପାଇଁ ଯେତେବେଳେ ଯନ୍ତା ବସାଯାଏ—ତା ଭିତରେ ସ୍ତ୍ରୀ ହାତୀକୁ ରଖା ଯାଇଥାଏ । ସଂଗଲିପ୍ସୁ ହାତୀ ସଂଗମପାଇଁ ଯାଇ ବନ୍ଧନରେ ପଡେ ଓ ଅଙ୍କୁଶର ଦୌରାତ୍ମ୍ୟ ସହ୍ୟ କରେ । ନିଆଁର ସୁନ୍ଦର ରୂପରେ ଆକୃଷ୍ଟ ପତଙ୍ଗ ପରି ନାରୀ ରୂପରେ ମୁଗ୍ଧ ପୁରୁଷର ମୃତ୍ୟୁ ଅତି ନିକଟରେ ଥାଏ । ପୁରୁଷର ମନ ଜୟ କରିବାପାଇଁ ନାରୀର ରୂପ ଆମନ୍ତ୍ରଣର ଇଙ୍ଗିତ ଯଥେଷ୍ଟ । ଏହି ଇଙ୍ଗିତରେ ପୁରୁଷ ଭୁଲିଯାଏ ଓ ବନରେ ଘୁରୁଥିବା ହରିଣ ବ୍ୟାଧର ଆମନ୍ତ୍ରଣ ସଂଗୀତରେ

୯ । ୧୧ଶ ସ୍କନ୍ଧ ପୃ ୭୩

ଭୁଲିଯାଇ ଢାଲରେ ପଡିତ ଢେଲାପରି ଦୁଃଖ ଜଞ୍ଜାଳରେ ପଡ଼ି ସ୍ୱାଧୀନତା ହରାଏ । ସନ୍ନ୍ୟାସୀ ଅବଧୂତ ତେଣୁ ଏ ତିନୋଟି ଗୁରୁଙ୍କୁ ସମ୍ମାନ ଦେବାପାଇଁ ଉତ୍ସୁକ ହୋଇଉଠିଲେ । ସାଂସାରିକ ଜୀବନ ସନ୍ନ୍ୟାସୀ ଜୀବନ ଭଳି ପୂର୍ଣ୍ଣରୂପେ ନାରୀସଂଗ ରହିତ ହୋଇ ନପାରେ । କିନ୍ତୁ ଏପ୍ରକାର ଲିପ୍ସା ମନୁଷ୍ୟ ଯଥାସମ୍ଭବ ସୀମା ଓ ସଂଯମ ମଧ୍ୟରେ ରକ୍ଷା କରିପାରେ ।

ସର୍ପ ଏଣେତେଣେ ଘୁରୁଥାଏ । ସେ ଯାଯାବର । କୌଣସି ଗୃହର ଆକର୍ଷଣ ବା ବନ୍ଧନ ତାର ନଥାଏ । ଯେତେବେଳେ ଯାହାର ଗର୍ତ୍ତ ପାଏ ସେଥିରେ ବିଶ୍ରାମ କରିଥାଏ । ପରକ୍ଷଣରେ ବିଚରଣ କରେ । ତେଣୁ ଅବଧୂତ କହିଲେ "ହେ ଯଦୁରାଜ, ମୁଁ ସର୍ପଭଳି ଗୃହ ବନ୍ଧନହୀନ । ତେଣୁ ଆନନ୍ଦରେ, ନିଃଶଂକ, ନିଶ୍ଚିନ୍ତ ଭାବରେ ଘୂରିପାରୁଛି । ସର୍ପଠାରୁ ଏ ଆଚରଣ ଶିକ୍ଷା କରିଥିବାରୁ ସେ ମୋର ଅନ୍ୟତମ ଗୁରୁ । ପୁଣି ଏହି ଅନାସକ୍ତି ଓ ନିର୍ଲିପ୍ତତାର ଦୀକ୍ଷା ଦେଇଛି ମୋତେ ଊର୍ଣ୍ଣନାଭ ।" ଦୂରଦର୍ଶୀ, ଜ୍ଞାନୀ ଜଗନ୍ନାଥଙ୍କ ଭାଷାରେ—

"ଯେସନେ କୀଟ ଊର୍ଣ୍ଣନାଭି ନିଜ ବଦନୁ ସୂତ୍ର ଭାବି ॥
ଏକାନ୍ତେ ରାତ୍ରେ କ୍ରୀଡ଼ା କରେ ସୂର୍ଯ୍ୟ ଉଦୟେ ତା ସଂହରେ ।" ୧୦ ।

"ସଂଧ୍ୟାରେ ଜାଲପାତେ ଓ ସକାଳୁ ନିଜେ ନିଜେ ତା ନଷ୍ଟ କରିଦିଏ । ମୁଁ ମଧ୍ୟ ସେପରି ରାତ୍ରରେ ଯେ କୌଣସି ସ୍ଥାନ ବିଶ୍ରାମ ନିମନ୍ତେ ଆଦରିନିଏ, ପ୍ରଭାତରେ ତ୍ୟାଗକରେ । ତେଣୁ ଐଶ୍ୱର୍ଯ୍ୟମୟ ଉଆସରେ ବାସକରୁଥିବା ହେ ରାଜା, ମୋତେ ଦେଖି ତୁମେ ବିସ୍ମିତ ହୋଇପଡୁଛ ।"

ସବୁ ଇନ୍ଦ୍ରିୟର ଆସକ୍ତିଠାରୁ ରସନାଇନ୍ଦ୍ରିୟର ଆକର୍ଷଣ ଦୁର୍ଜୟ ହୋଇ ଉଠେ । ଏହି ଇନ୍ଦ୍ରିୟ ସଂଯତହେଲେ ଅନ୍ୟଇନ୍ଦ୍ରିୟ ଅନାୟାସରେ କବଳିତ ହୋଇପାରନ୍ତି । ବନ୍ସୀ ଖଡାର ଥୋପକୁ ଖାଇବାର ଲୋଭରେ ବିନଷ୍ଟ ହେବାକୁ ଯାଉଥିବା ଯନ୍ତ୍ରଣା କାତର ମାଛଟିକୁ ଦେଖି ଅବଧୂତ ଏ ଶିକ୍ଷା ଲାଭକଲେ । ଶର ସଂଧାନ ସଫଳହୁଏ ସେତିକିବେଳେ, ଯେବେ ଶରସଂଧାନକାରୀ ଏକାଗ୍ରତା ଓ ଦୃଢ଼ତାରେ ତାହା ପ୍ରୟୋଗକରେ । ସେହିଭଳି ଆତ୍ମାର ମଂଦିର ରୂପକ ଏ ଦେହର ସାର୍ଥକତା ସେଇଠି ଯେବେ ମଣିଷ ଲକ୍ଷ୍ୟ ସାଧନରେ ଏକାଗ୍ର ଓ ଦୃଢ଼ ହୋଇପାରେ । ସଫଳତା ପାଇଁ ଏକାଗ୍ରତା ଓ ଦୃଢ଼ନିଷ୍ଠାର ଗୁରୁତ୍ୱ ଅବଧୂତ ଶିକ୍ଷାକଲେ ଶରସଂଧାନକାରୀ ଠାରୁ । ଯଦୁରାଜାଙ୍କୁ ବର୍ଣ୍ଣନା ମାଧ୍ୟମରେ ସେ ମାନବସମାଜକୁ ଏହି ଉପଦେଶ ଦେଇ ଯାଇଛନ୍ତି । କର୍ମ ସାଧନାର ଯେ କୌଣସି କ୍ଷେତ୍ରରେ, ପୃଥିବୀର ଯେ କୌଣସି ସ୍ଥାନରେ, ସୃଷ୍ଟିର ପ୍ରାରମ୍ଭରୁ ଏପର୍ଯ୍ୟନ୍ତ ଯେକୌଣସି ସମୟରେ ଐକାନ୍ତିକ ନିଷ୍ଠା ବ୍ୟତୀତ ମଣିଷ କେବେ ଜୟଯୁକ୍ତ ହୋଇନାହିଁ । ସଫଳତାର ଏ ଅନ୍ତର୍ନିହିତ ମୌଳିକ ରୂପଟିକୁ ତେଣୁ ଅବଧୂତ ଜାଣି ପାରିଥିଲେ ।

ଅଜ୍ଞ ବାଳକଟି ମଧ୍ୟ ଗୁଣସୀମା ଲଂଘନକାରୀ ସାଧୁ ଅବଧୂତଙ୍କର ଗୁରୁ ସ୍ଥାନରେ ସମ୍ମାନିତ ହୋଇଛି । ତାର ପର ଆପଣା ଜ୍ଞାନ ନାହିଁ, ସମ୍ମାନ ଓ ଅସମ୍ମାନରେ ସେ ବିଚଳିତ ହୁଏନାହିଁ । ଆତ୍ମାନନ୍ଦରେ ସେ ଅବଗାହନ

୧୦—୧୧ଶ ସ୍କନ୍ଧ ଭାଗବତ—ପୃ ୭୪

କରିଥାଏ । ଶିଶୁର ଯାଦୁକରୀ ପ୍ରଭାବରେ ପ୍ରଭାବିତ କବି ବୈକୁଣ୍ଠନାଥ ଗାଇଛନ୍ତି —

"ଆସ ଆନନ୍ଦ, ଆସରେ ଜୀବନ ଉଇଁ
ସୃଷ୍ଟିର ଉଷା, ସକଳ ଜୀର୍ଣ୍ଣ ହସି ହସି ଯାଅ ଛୁଇଁ ।" ୧୧ ।

ଈଶ୍ୱରଙ୍କୁ ପାଇବାକୁ ହେଲେ ବାଳସୁଲଭ ସ୍ୱଭାବର ଅଧିକାରୀ ହେବାକୁ ହୋଇଥାଏ । ମୁଁ ସେହି ଅମୃତୋପମ ଆତ୍ମାନନ୍ଦର ସଂଧାନ ପାଇଛି । ହେ ରଜା, ତେଣୁ ସଂସାରେ ତାପ ମୋତେ ପ୍ରଭାବିତ କରିପାରୁ ନାହିଁ ।" ଅବଧୂତ ଜଣାଇଛନ୍ତି ଯେ ଶିଶୁ ବର୍ତ୍ତମାନ ଯାହା ସହିତ କଳହ କରିବ, ପରମୁହୂର୍ତ୍ତରେ ତାକୁ ଆଲିଙ୍ଗନକରି ଅତି ଆଗ୍ରହରେ ତା ସହିତ ଖେଳରେ ମାତିବ । କେତେ ସଜାଇବ ତା ଖେଳଘରକୁ ପୁଣି ଟିକେ ପରେ ସବୁ ଛାଡ଼ିଦେଇ ମାଆ ପାଖକୁ ଦଉଡ଼ିଯିବ । ଏହା ତା'ର ବିଶେଷତ୍ୱ ।

କୁରର ପକ୍ଷୀ ବାସନା ତ୍ୟାଗର ଦୃଷ୍ଟାନ୍ତ ଦେଖାଇଛି ଅବଧୂତଙ୍କୁ । ଅତି ପ୍ରିୟ ବସ୍ତୁଠାରୁ ନିଜକୁ ଦୂରେଇ ରଖିବା ମାନସିକ ଶାନ୍ତି ଓ ଆନନ୍ଦ ପାଇଁ ଅପରିହାର୍ଯ୍ୟ । କୁରର ପକ୍ଷୀ ବା ମାଟିଆ ଚିଲ ଯେବେ ଥଣ୍ଟରେ ମାଛ ଧରେ ତାକୁ କୁଆ ଇତ୍ୟାଦି ଲୋଭରେ ଗୋଡ଼ାନ୍ତି । ମାଛ ତାର ଅତି ପ୍ରିୟ । ତା'ପାଇଁ ଗଛଡାଳରେ ଏକଧ୍ୟାନରେ ଗୃହିଁ ବସିଥାଏ , ସୁଯୋଗ ପାଇଲେ ଝାଂପିନିଏ; କିନ୍ତୁ ତାକୁ ଆହାର କରିବାକୁ ଯହାନ୍ତେ ବହୁ ଶତ୍ରୁ ମିଳିତ ଆକ୍ରମଣ କରନ୍ତି । ବ୍ୟାକୁଳ ଚିଲଟି ମାଛକୁ ଫିଙ୍ଗିଦେଲେ ନିଶ୍ଚିନ୍ତ ହୁଏ । କୌଣସି ପକ୍ଷୀ ଆଉ ତାକୁ ବ୍ୟସ୍ତ କରନ୍ତି ନାହିଁ । ଆଲୋଚକ ଅଚିନ୍ତ୍ୟ ସେନଗୁପ୍ତଙ୍କ ଭାଷାରେ 'ଚିଲେର ମୁଖେ ଯତକ୍ଷଣ ମାଛ ଥେକେ ତତକ୍ଷଣ ଅନ୍ୟ ପକ୍ଷୀରା ତାକେ ତାଡ଼ା କରେ । ସେଇ ମାଛ ଫେଲେ ଦେୟ ଅମନି ନିଶ୍ଚିନ୍ତ ।' ୧୨ । ଚିନ୍ତା ରହିତ, ଆନନ୍ଦିତ ହେବାକୁ ଆଶାକଲେ ବାସନା ସହିତ ନିଜକୁ ଜଡ଼ିତ କରିବାକୁ ହେବ ନାହିଁ । ଯଥାସମ୍ଭବ ବାସନା ତ୍ୟାଗକଲେ ମଣିଷ ଚିନ୍ତା ଓ ଜଂଜାଳରୁ ମୁକ୍ତି ପାଇବ ।

ଚବିଶ ଗୁରୁଙ୍କ ମଧ୍ୟରେ ସର୍ବଶେଷରେ ଆସେ କୁମ୍ଭକାର କୀଟ । ଯାହାକୁ କବି ଜଗନ୍ନାଥ ବର୍ଣ୍ଣନା କରିଛନ୍ତି—

ଏବେ ହୋ ଶୁଣ ନରପତି । ସଂସାରେ ଜୀବଆତ୍ମାଗତି ।।
ଦେହ ବିଯୋଗ କାଳେ ଜନ୍ତୁ । ମନେ ଚିନ୍ତଇ ଯେତେ ହେତୁ ।।
× × × ×
ଜନ୍ମଇ ସେହି ରୂପଧରି । ଯେସନେ କୀଟ ପେଷକାରୀ ।।

ଅବଧୂତ କହିଲେ, "ହେ ରଜା, ସଂସାରରେ ଜୀବର ଗତି ସମ୍ବନ୍ଧରେ ମୋର ଏହି ବିଶ୍ୱାସ ଜନ୍ମୁଛି ଯେ ମୃତ୍ୟୁକାଳରେ ଜୀବାତ୍ମା ଅଭ୍ୟାସବଶତଃ ଯେଉଁ ରୂପକୁ ମନମଧ୍ୟରେ ଧ୍ୟାନକରେ ସେହି ରୂପକୁ ପ୍ରାପ୍ତ ହୁଏ ବା ସେହି ଯୋନିରେ ପୁନର୍ଜନ୍ମ ନିଏ । ଏହି ଅଜ୍ଞାତ ନିଗୂଢ଼ ସତ୍ୟଟି ଶିକ୍ଷାକରି ଥିବାରୁ ସେ କୀଟ ମୋର ନମସ୍ୟ ଗୁରୁ । ମୋର ଆତ୍ମା ଜନ୍ମବନ୍ଧରୁ ମୁକ୍ତିପାଇ ପରମାତ୍ମାଙ୍କ

୧୧ । ଶିଶୁ ସୃଷ୍ଟି—କାବ୍ୟ-ସଂଚୟ କବିବର ପଟ୍ଟନାୟକ ପୃ ୧୧
୧୨ । କବି ରାମକୃଷ୍ଣ—ଶ୍ରୀ ଅ: କୁ: ସେନଗୁପ୍ତ

ଠାରେ ଲୀନ ହେବା ନିମିତ୍ତ ମୁଁ ଅବିରତ ଭଗବାନଙ୍କ ଧ୍ୟାନକରୁଛି ।" ଆତ୍ମ ର ମୃତ୍ୟୁକାଳୀନ ଚିନ୍ତା ସଂବନ୍ଧରେ ବହୁ ଅତିରଂଜନ ଘଟିଛି । ଅଜାମିଳ ଉପାଖ୍ୟାନ ଏହାର ଦୃଷ୍ଟାନ୍ତ । ମହାପାପୀ ବିଷ୍ଣୁଭିଡ଼ଙ୍କ ଅଜାମିଳ ମୃତ୍ୟୁକାଳରେ ନିଜ ପୁତ୍ରର ନାମ (ନାରାୟଣ) ସ୍ମରଣକରି ଡନ୍ତ୍ରବନ୍ଧରୁ ମୁକ୍ତହେଲା । କୁମ୍ଭକାର କାଟ ମାଟିରେ କୁମ୍ଭଭଳି ବସା ନିର୍ମାଣକରେ । ଛୋଟ ଛୋଟ ପୋକ ଆଣି ଭିତରେ ରଖେ, ବାରଂବାର ସେ ପୋକଙ୍କୁ ଦେଖୁଥାଏ । ପୋକଗୁଡିକ ମଲାବେଳେ କାଟର ରୂପ ଦେଖି ଭୟକାକୁଳ ହୋଇପଡନ୍ତି ଓ ସେହି କାଟରେ ରୂପାନ୍ତରିତ ହୁଅନ୍ତି । ଏହାର ବିଜ୍ଞାନସମ୍ମତ କାରଣ ଭିନ୍ନ ଅଛି ନିଶ୍ଚୟ । କିଂତୁ ସାଧାରଣ ମଣିଷ ଆଖିରେ କୁମ୍ଭକାରର ରୂପାନ୍ତର ଏହଭଳି ହୋଇଥାଏ । ଏହି ମୃତ୍ୟୁକାଳୀନ ସ୍ମରଣ ମଣିଷର ଅଭ୍ୟାସବଶତଃ ହିଁ ହୋଇଥାଏ । ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବାରମ୍ବାର ଏହା ବୁଝାଇଛନ୍ତି ।

> "ଅନ୍ତକାଳେ ଚ ମାମେବ ସ୍ମରନ୍ ମୁକ୍ତ୍ୱା କଳେବରମ୍
> ଯଃ ପ୍ରୟାତି ସ ମଦ୍‌ଭାବଂ ଯାତି ନାସ୍ତ୍ୟତ୍ର ସଂଶୟଃ ।
> ଯଂ ଯଂ ବାପି ସ୍ମରନ୍ ଭାବଂ ତ୍ୟଜତ୍ୟନ୍ତେ କଳେବରମ୍
> ତଂ ତମେବୈତି କୌନ୍ତେୟ ସଦା ତଦ୍‌ଭାବ ଭାବିତଃ । (୧୩)

ଜୀବାତ୍ମା ଯେତେବେଳେ ଜୀର୍ଣ୍ଣ ଶରୀରକୁ ତ୍ୟାଗ କରିବାକୁ ଉଦ୍ୟତ ସେତେବେଳେ ତାର ବ୍ୟାକୁଳତା ଯେଉଁ ଦିଗକୁ ଧାବିତ ହୁଏ ସେ ସେହି ଅବସ୍ଥା ପ୍ରାପ୍ତହୋଇ ପୁନର୍ବାର ଜୀବଜଗତକୁ ଫେରିଆସେ । କାମନା ହିଁ ଜୀବାତ୍ମାକୁ ବାରମ୍ବାର ଶରୀର ପରିଗ୍ରହଣ କରିବାକୁ ଉତ୍ସାହିତ କରେ ।

ଆଲୋଚକ ପି.ଏନ୍. ସିହ୍ନା ଅବଧୂତଙ୍କର ଉକ୍ତିକୁ ଏହିପରି ରୂପ ଦେଇଛନ୍ତି । "When either through affection hatred or fear, a man throws his whole heart upon some object, and mind holds it fast, he attains the form of that object, I have learned this from the wasp." ୧୪ ତେବେ ଏହି ମୃତ୍ୟୁକାଳୀନ ସ୍ମରଣ ଅଭ୍ୟାସହେତୁ ହୋଇଥାଏ । ଅଜାମିଳଙ୍କ ଭଳି ଅଘନକ ଭବରେ ହୋଇ ନଥାଏ ।

ଅବଧୂତ ସ୍ୱଇଚ୍ଛାରେ ବରଣକରି ନେଇଛନ୍ତି ଚବିଶଗୋଟି ଗୁରୁ । କେହି ପୁଣି ପ୍ରତ୍ୟକ୍ଷଭାବେ ତାଙ୍କର ଦୀକ୍ଷାଗୁରୁ ନୁହନ୍ତି । ଆତ୍ମାର ମୁକ୍ତି ନିମିତ୍ତ ବ୍ୟାକୁଳ ଏଇ ସନ୍ନ୍ୟାସୀ ଯାହାଠାରେ କିଛି ଶିକ୍ଷଣୀୟ ସ୍ୱଭାବ ଲକ୍ଷ୍ୟ କରିଛନ୍ତି, ତାକୁ ପ୍ରଣିପାତ କରିଛନ୍ତି । ତା ଭିତରେ କାଟ, ପତଂଗଠାରୁ ପଶୁ, ପକ୍ଷୀ, ମଣିଷ ପର୍ଯ୍ୟନ୍ତ ରହିଛନ୍ତି । ସମାଜର ପତିତା ବେଶ୍ୟା ପିଂଗଳାଠାରେ ମଧ୍ୟ ଦିବ୍ୟ ଆଲୋକ ଉଦ୍ଭାସିତ ହୋଇ ଉଠିଛି । ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଦୀକ୍ଷା ଗ୍ରହଣ କରିଛନ୍ତି ଅବଧୂତ । ଏହି ଗୁରୁମାନେ ପୁଣି ନିଜ ବାଟରେ ନିଜ ସ୍ୱଭାବସୁଲଭ ରୀତିରେ ଚାଲିଛନ୍ତି – ଶିଷ୍ୟକୁ କୌଣସି ଆଦର୍ଶ ଶିଖାଇବାକୁ ସଚେତନ ହୋଇ ନାହାନ୍ତି । ନିଜ କର୍ମରେ ସେମାନେ ଯାହା ଗ୍ରହଣ କରିଛନ୍ତି, ତାହାହିଁ ଶିକ୍ଷାକରିଛନ୍ତି

---

୧୩ । ଶ୍ରୀମଦ୍ଭାଗବତ ଗୀତା—ଅକ୍ଷର-ବ୍ରହ୍ମଯୋଗ, ୮ମ ଅଧ୍ୟାୟ ।
14. A Study of Bhagabat Puran-by P. N. Sinha

ଅବଧୂତ । ଏ ଯୁଗରେ ଗୁରୁଶିଷ୍ୟଙ୍କର ସମ୍ପର୍କ ଅନ୍ତଃସାର ଶୂନ୍ୟ ଓ ତିକ୍ତ ହୋଇ ପଡ଼ିଲାବେଳେ ଗୁରୁ ଓ ଗୁରୁଜନଙ୍କ ପ୍ରତି ଆନୁଗତ୍ୟ ଦୂରେ ଥାଉ, ଅସୌଜନ୍ୟ ବ୍ୟବହାର ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହେଲାବେଳେ ଅବଧୂତଙ୍କର ଏହି ଗୁରୁଶିଷ୍ୟ ସମ୍ପର୍କର ଅନୁଧ୍ୟାନ ଆମକୁ ଉତ୍ସାହିତ ଓ କୌତୂହଳୀ କରିବା ସ୍ୱାଭାବିକ । ଶିଷ୍ୟତ୍ୱର କଠିନ ସାଧନ ମାର୍ଗକୁ ନିଜର କରି ନେଇଥିଲେ ଅବଧୂତ । ବର୍ତ୍ତମାନ ଯୁଗରେ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଯୁବକକୁଳ ଅନାଗ୍ରହୀ । ସହଜରେ ଗୁରୁ ହେବାର ନିଶାରେ ମଧ୍ୟ କେତେକ ଶିକ୍ଷକ ପାଗଳ । ଗୁରୁ ହେବାପାଇଁ ଯେଉଁ ତ୍ୟାଗ, ଯେଉଁ ଆୟାସ ସାଧନ ଓ ସର୍ବାନ୍ତଃକରଣରେ ଯେଉଁ ଶୁଦ୍ଧତା ଆବଶ୍ୟକ ତାହା ଗୁରୁଙ୍କଠାରେ ପ୍ରକାଶିତ ନହେଲେ ଶିଷ୍ୟ ସ୍ୱାଭାବିକ ବଶୀଭୂତ ହୁଏନାହିଁ । ଗ୍ରହଣଶୀଳ ମନୋବୃତ୍ତି ଶିଷ୍ୟର ଥିବା ଆବଶ୍ୟକ । ଶିଷ୍ୟର ଚରିତ୍ରରେ ଶିକ୍ଷଣୀୟ ବ୍ୟକ୍ତିତ୍ୱକୁ ସମ୍ମାନ ଦେବାର ନମ୍ରତା ଓ ଆଦର୍ଶବାଦ ରହିବା ଅପରିହାର୍ଯ୍ୟ ।

— — —


## ପୂଜ୍ୟପୂଜା ସଂସଦ ପ୍ରକାଶିତ ପରିକ୍ରମା

(୧) ମଧୁ ସ୍ମରଣିକା ୧୯୬୬
(୨) ଗୋପବନ୍ଧୁ ପରିକ୍ରମା ୧୯୬୮
(୩) ନୀଳକଣ୍ଠ ପରିକ୍ରମା ୧୯୬୯
(୪) ସହକାର ପରିକ୍ରମା ୧୯୭୧
(୫) ଆଚାର୍ଯ୍ୟ ପରିକ୍ରମା ୧୯୭୩
(୬) ଅତିବଡ଼ୀ ପରିକ୍ରମା ୧୯୭୫

ନିମ୍ନ ଠିକଣାରେ ଅନୁସନ୍ଧାନ କରନ୍ତୁ —

ଗୋପବନ୍ଧୁ ପାଠାଗାର
ପୂଜ୍ୟପୂଜା ସଂସଦ, ଖୁଉଳିଆଗଞ୍ଜ
କଟକ—୪

# ଭାଗବତର ଗୁରୁତତ୍ତ୍ୱ

ଅଧ୍ୟାପକ, ଲମ୍ବୋଦର ଶତପଥୀ

ଯାହାଙ୍କଠାରୁ ଆମେ କିଛି ଶିଖୁ, ସେ ହେଲେ ଗୁରୁ । ଆମେ ଶିକ୍ଷାଗୁରୁଙ୍କ ଠାରୁ ବିଭିନ୍ନ ସାଂସାରିକ ବିଦ୍ୟା ଶିକ୍ଷାକରୁ । ଦୀକ୍ଷା ଗୁରୁଙ୍କଠାରୁ ଦୁଃଖପୂର୍ଣ୍ଣ ସଂସାରରୁ ମୁକ୍ତିଲାଭ କରି ଈଶ୍ୱରପ୍ରାପ୍ତିର ଉପାୟ ପ୍ରାପ୍ତ ହେଉ । ପୁରାଣ ପ୍ରବକ୍ତା ଋଷିମାନେ ଦୃଷ୍ଟାନ୍ତ ଓ ଯୁକ୍ତି ସହକାରେ ରୋଚକଭାବରେ ଭଗବତ୍ ତତ୍ତ୍ୱ ବର୍ଣ୍ଣନା କରି ଓ ନୀତି ଉପଦେଶ ଦେଇ ମନୁଷ୍ୟକୁ ଆଧ୍ୟାତ୍ମିକ ଦିଗକୁ ଆକୃଷ୍ଟ କରନ୍ତି । ଆମେ ଯଦି ଆଖି ଖୋଲି ରଖୁ, ତେବେ ପ୍ରତି ମୁହୂର୍ତ୍ତରେ ଆମ ଚତୁଃପାର୍ଶ୍ୱରେ ଘଟୁଥିବା ଘଟଣାବଳୀ ଆମକୁ ବହୁତ ଶିକ୍ଷା ଦିଅନ୍ତି । ବିଭିନ୍ନ ସ୍ଥାବର-ଜଙ୍ଗମ ଚରିତ୍ରର ବୈଚିତ୍ର୍ୟମୟ ଗତିବିଧି ଅନୁଧ୍ୟାନ କରିପାରିଲେ ସେଥିରୁ ମଧ୍ୟ ବହୁତ ସୂଚନା ମିଳିଥାଏ । ଶ୍ରୀମଦ୍ ଭାଗବତରେ ଏ ସମସ୍ତଙ୍କୁ ଗୁରୁ ବୋଲି ଅଭିହିତ କରାଯାଇ ଅଛି । ଏହାହିଁ ଗୁରୁ ଶବ୍ଦର ପ୍ରକୃତ ଓ ବ୍ୟାପକ ଅର୍ଥ ।

ଏହି ପୃଥିବୀ ମାନବର ଏକ ବିରାଟ ଶିକ୍ଷାକ୍ଷେତ୍ର । ଶୈଶବରେ ଜିଜ୍ଞାସା ବୃତ୍ତି ଉଦୟ ହେବାମାତ୍ରେ ମନୁଷ୍ୟ ସଂସାରର ପ୍ରହେଳିକାଗୁଡ଼ିକୁ ବୁଝିବାକୁ ଚେଷ୍ଟାକରେ । କିଛି କିଛି ମଧ୍ୟ ବୁଝେ । ଯାହା ନିଜେ ବୁଝିପାରେ ନାହିଁ, ତାହା ଅନ୍ୟକୁ ପଚାରି ବୁଝେ । ମାଆ, ବାପ, ଭାଇ, ଭଉଣୀ ପ୍ରଭୃତି ଯେଉଁ ବୟସ୍କ ଏବଂ ଅନ୍ତରଙ୍ଗ ବ୍ୟକ୍ତିମାନେ ତା ନିକଟରେ ଥାନ୍ତି, ସେମାନେ ତାକୁ କିଛି କିଛି ବୁଝାଇ ଦିଅନ୍ତି । ଏହା ହେଲା ତାର ପ୍ରାରମ୍ଭିକ ଶିକ୍ଷା ଏବଂ ମାଆ ବାପା ପ୍ରଭୃତି ହେଲେ ପ୍ରାଥମିକ ଗୁରୁ ।

ଟିକିଏ ବଡ ହେଲେ ବାଳକକୁ ଶିକ୍ଷକଙ୍କ ନିକଟରେ ଛାଡ଼ି ଦିଆଯାଏ । ଶିକ୍ଷକ ପୁସ୍ତକ ପଢାନ୍ତି ଓ ନିଜର ଅନୁଭୂତି କଥା ଶିଖାନ୍ତି । ପ୍ରାଚୀନକାଳରୁ ବର୍ତ୍ତମାନକାଳ ପର୍ଯ୍ୟନ୍ତ ମନୀଷୀମାନେ ସଂସାରର ବିଭିନ୍ନ ତତ୍ତ୍ୱ ପରୀକ୍ଷା କରି ନିଜ ନିଜ ଅନୁଭୂତି ବର୍ଣ୍ଣନା କରିବା ପାଇଁ ଅସଂଖ୍ୟ ପୁସ୍ତକ ଲେଖିଯାଇ ଅଛନ୍ତି ଏବଂ ଏବେ ମଧ୍ୟ ଏଭଳି ପୁସ୍ତକ ଲେଖା ଚାଲିଛି । ସେଗୁଡ଼ିକ ପାଠକରି ମନୁଷ୍ୟ ଅଳ୍ପ ସମୟରେ ବିରାଟଜ୍ଞାନର ଅଧିକାରୀ ହୋଇ ପାରୁଛି । ଏଣୁ ଗ୍ରନ୍ଥ ଲେଖକ ଏବଂ ଶିକ୍ଷକ ଉଭୟଙ୍କର ମିଳିତ ପ୍ରଚେଷ୍ଟା ଛାତ୍ରର ଜ୍ଞାନଚକ୍ଷୁ ଖୋଲିଦିଏ । ଶିକ୍ଷକ ଛାତ୍ରର ମତିଗତି କଳନା କରି ଯେପରିଭାବରେ ଶିକ୍ଷାଦେଲେ ତାର ଜିଜ୍ଞାସା ବୃତ୍ତି ଅବ୍ୟାହତ ରହିବ ଏବଂ କ୍ରମଶଃ ବୃଦ୍ଧି ଲାଭ କରିବ, ସେପରି ଶିକ୍ଷା ଦେଇ ଛାତ୍ରର ଭକ୍ତିଭାଜନ ହୁଅନ୍ତି । ସେ ଛାତ୍ରର କେତେକ ସମସ୍ୟା ସମାଧାନ କରି ଦିଅନ୍ତି ଏବଂ ଆଉ କେତେକ ସମସ୍ୟା ସମାଧାନ କରିବା ପାଇଁ ଛାତ୍ରକୁ ଛାଡିଦିଅନ୍ତି । ଏହା ଫଳରେ ଛାତ୍ରର ସମାଧାନ ଶକ୍ତି ପ୍ରଖର ହୁଏ । ଗୁରୁ ପ୍ରଦର୍ଶିତ ପନ୍ଥା ଅନୁସରଣ କରି ଏବଂ ଗୁରୁକୃପାଲବ୍ଧଜ୍ଞାନ ପ୍ରୟୋଗ କରି ମନୁଷ୍ୟ କ୍ରମଶଃ ସଂସାରର ସ୍ୱରୂପ ସହିତ ପରିଚିତ ହୁଏ ।

ଆଜିକାଲି ସ୍କୁଲ-କଲେଜମାନଙ୍କରେ ବାଳକ ବାଳିକାଙ୍କ ବିଦ୍ୟାଶିକ୍ଷା ପାଇଁ ବ୍ୟବସ୍ଥା ରହିଛି ; କିନ୍ତୁ ଯାହା ଦେଖାଯାଉଛି, ଆଚରଣ ଶିକ୍ଷାପ୍ରତି ଦୃଷ୍ଟି ଦିଆଯାଉ ନଥିବାରୁ ଛାତ୍ରମାନେ ପରିଶେଷରେ ସ୍ୱାର୍ଥପର ଓ ଶିଶ୍ନୋଦର ପରାୟଣ

ହୋଇ ଗୋଟିଏ ଗୋଟିଏ ବୁଦ୍ଧି ରକ୍ଷସ ପାଲଟି ଯାଉଛନ୍ତି । ଏମାନେ ପ୍ରକୃତ ମାନବିକତା କ'ଣ, ବୁଝନ୍ତିନାହିଁ । ଦେବଭାବ ଦିଗରେ ଅଗ୍ରସର ହେବା ତ ଦୂରର କଥା ଏମାନଙ୍କର ବିଦ୍ୟାବୁଦ୍ଧି ବିପରୀତମୁଖୀ ହୋଇ ଏମାନଙ୍କୁ ଦୁର୍ଦ୍ଦାନ୍ତ ଦାନବରୂପରେ ପରିଣତ କରି ଦେଉଅଛି । ଏମାନେ ଶିକ୍ଷକଙ୍କୁ ବିଦ୍ୟା ବ୍ୟବସାୟୀ ବୋଲି ମନେ କରନ୍ତି । ତେଣୁ ଭକ୍ତିଭାବ ରହୁନାହିଁ ।

ପ୍ରାଚୀନକାଳରେ ଛାତ୍ର ଗୁରୁଙ୍କ ନିକଟରେ ରହି ଆଚରଣ ଶିକ୍ଷା କରୁଥିଲା ଏବଂ ତତ୍‌ସଙ୍ଗେ ସାଂସାରିକ ଓ ଐଶ୍ୱରିକ ଜ୍ଞାନଲାଭ କରୁଥିଲା । ଏଥିଯୋଗୁଁ ଗୁରୁଙ୍କୁ ପରମେଶ୍ୱର ବୋଲି କୁହାଯାଉଥିଲା । ବ୍ରହ୍ମଚର୍ଯ୍ୟାଶ୍ରମରେ ଶିଷ୍ୟ ଗୁରୁଙ୍କୁ କିଭଳି ଭାବରେ ଭକ୍ତି କରିବା ଉଚିତ, ସେ ବିଷୟରେ ଭାଗବତରେ ବର୍ଣ୍ଣନା କରାଯାଇଅଛି ଯେ—

ଗୁରୁ ଚରଣେ ନମସ୍କାର । ଯତ୍ନେ କରିବ ସପ୍ତବାର ।।
ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ।।
ଗୁରୁଟି ସର୍ବଧର୍ମ ମୟେ । ମୁହିଁ ବସଇ ଗୁରୁଦେହେ ।।
ଏ ଘେନି ଗୁରୁ ଭଗବାନ । ସେ ନୋହେ ମନୁଷ୍ୟ ସମାନ ।।
ସ୍ୱଭାବେ ନିରତେ ପ୍ରଭାତ । ଭିକ୍ଷା ମାଗିବ ନିତ୍ୟେ ନିତ୍ୟେ ।।
ଗୁରୁ ସମୀପେ ତାହା ନେଇ । ଥୋଇବ ଶିରେ କର ଦେଇ ।।
ପ୍ରସନ୍ନେ ଗୁରୁ ଦେବେ ଯେତେ । ତାହା ଭୁଞ୍ଜିବ ଶୁଦ୍ଧଚିତ୍ତେ ।।
ଗୁରୁ ବଚନ ଅବଧାନେ । ରଜନୀ ବଞ୍ଚିବ ମଉନେ ।।
ଗୁରୁ ସମୀପେ ଭୃତ୍ୟ ପ୍ରାୟେ । ପ୍ରଥମେ ଥିବ ସେ ଉଭାଏ ।।
ଗୁରୁ ପ୍ରସନ୍ନେ ଆଜ୍ଞା ପାଇ । ବସିବ ଗୁରୁ ମୁଖ ଚାହିଁ ।।
ସଭୟେ ସମୀପେ ବସିବ । ଚରଣ ଅଗ୍ର ନ ଦିଶିବ ।।
ସ୍ୱଭାବେ ଦୂରେ ଉଭା ହୋଇ । କର ଯୁଗଳ ଶିରେ ଦେଇ ।।
ନିତ୍ୟେ ନମିବ ଗୁରୁପାଦେ । ବେଦ ବଚନ ଅନୁବାଦେ ।।
ମୋତେ ପୂଜିବ ଗୁରୁଦେହେ । ମୋ ତହୁଁ ଗୁରୁ ଭିନ୍ନ ନୋହେ ।।

ପୁରାଣ-ପ୍ରବକ୍ତାମାନଙ୍କୁ ମଧ୍ୟ ଶ୍ରୋତାମାନେ ଗୁରୁଭାବରେ ଗ୍ରହଣ କରନ୍ତି । ବିଭିନ୍ନ ଶ୍ରୋତା ଓ ବକ୍ତାଙ୍କ ସଂବାଦ ନେଇ ଭାଗବତ ରଚିତ ହୋଇଅଛି । ଶୌନକ, ପରୀକ୍ଷିତ ପ୍ରଭୃତି ଶ୍ରୋତା ଓ ଜିଜ୍ଞାସୁ । ସୂତ ଓ ଶୁକଦେବ ପ୍ରଭୃତି ବକ୍ତା ଜ୍ଞାନୀ ଓ ଲୋକହିତ ପରାୟଣ । ସଂସ୍କୃତ ଭାଗବତ ମାହାତ୍ମ୍ୟରେ ଶୌନକ ପୁରାଣପ୍ରବକ୍ତା ସୂତଙ୍କୁ ଗୁରୁଭାବରେ ଗ୍ରହଣ କରି ନିମ୍ନଲିଖିତ ଶ୍ଳୋକରେ ଗୁରୁ ମହିମା ବର୍ଣ୍ଣନ କରିଅଛନ୍ତି —

ଚିନ୍ତାମଣି ର୍ଲୋକସୁଖଂ ସୁରଦ୍ରୁଃ ସ୍ୱର୍ଗ ସମ୍ପଦମ୍ ।
ପ୍ରଦଦାତି ଗୁରୁଃ ପ୍ରୀତୋ ବୈକୁଣ୍ଠଂ ଯୋଗି ଦୁର୍ଲଭମ୍ ।।

"ଚିନ୍ତାମଣି ମର୍ତ୍ତ୍ୟଲୋକର ସୁଖ ଦିଏ, କଳ୍ପବୃକ୍ଷ ସ୍ୱର୍ଗ ଲୋକର ସମ୍ପଦ ଦିଏ, କିନ୍ତୁ ଗୁରୁ ପ୍ରୀତ ହେଲେ ଯୋଗି-ଦୁର୍ଲଭ ବୈକୁଣ୍ଠ ପ୍ରଦାନ କରନ୍ତି ।

ଗୁରୁ କରିବାର ଅନ୍ୟ ଏକ ରୀତି ହେଲା—ପ୍ରକୃତିଠାରୁ ଏବଂ ସାଂସାରିକ ପ୍ରାଣୀମାନଙ୍କ ଗତିବିଧିରୁ ଶିକ୍ଷା ଆହରଣ କରିବା । ଏହା ସମସ୍ତେ କରିପାରନ୍ତି ନାହିଁ । କାରଣ, ଶୈଶବରେ ଉତ୍ପନ୍ନ ହୋଇଥିବା ଜିଜ୍ଞାସା ବୃତ୍ତିର ଅଗ୍ନି ସାଧାରଣତଃ ଇନ୍ଧନ ଅଭାବରୁ ନିର୍ବାପିତ କିମ୍ବା ହତପ୍ରଭ ହୋଇଯାଇଥାଏ । ବିଭିନ୍ନ ପ୍ରାଣୀ ଚରିତ୍ରରୁ ଏବଂ ପ୍ରକୃତିରୁ ପ୍ରତିମୁହୂର୍ତ୍ତରେ ଅତି ସହଜରେ

ଯେଉଁସବୁ ସୂଚନା ମିଳିବାର କଥା, ରୁଟଣ-ଭଗ୍ନ ଜିଜ୍ଞାସା ବୃତ୍ତି ଯୋଗୁଁ ମନୁଷ୍ୟ ସେ ସବୁ ଲାଭ କରିପାରେ ନାହିଁ । ଗୋଟିଏ ବୃଦ୍ଧ ଏବଂ ଗୋଟିଏ ମୃତବ୍ୟକ୍ତିକୁ ଦେଖି ବୁଦ୍ଧଙ୍କର ଯେଉଁ ବୈରାଗ୍ୟ ଜାତ ହୋଇଥିଲା, ତାହା ଲକ୍ଷ ଲକ୍ଷ ବୃଦ୍ଧ ଏବଂ ମୃତବ୍ୟକ୍ତିଙ୍କୁ ଦେଖି ଅନ୍ୟମାନଙ୍କର ହେଉନାହିଁ । ଭାଗବତରେ ବର୍ଣ୍ଣନା କରାଯାଇ ଅଛି ଯେ, ଜଣେ ଅବଧୂତ ନିଜର ଜିଜ୍ଞାସା ବୃତ୍ତିକୁ ଅବ୍ୟାହତ ରଖିବାଫଳରେ ପ୍ରକୃତି ଓ ପ୍ରାଣୀ ଚରିତ୍ରରୁ ବହୁ ଉପାଦେୟ କଥା ଗ୍ରହଣ କରି ଚବିଶଟି ଗୁରୁ କରିଥିଲେ ।

ସେ ଶିଖିଥିଲେ—ପୃଥିବୀଠାରୁ ସବୁ ସହିବା ; ପର୍ବତଠାରୁ ପରାର୍ଥ ପରତା ବାୟୁଠାରୁ ଉପଭୁକ୍ତ ବିଷୟକୁ ନିଜର ନ କରିବା ; ଆକାଶଠାରୁ ସର୍ବତ୍ର ପରିବ୍ୟାପ୍ତ ନିଃସଙ୍ଗ ବ୍ରହ୍ମଭାବ ; ଜଳଠାରୁ ସ୍ୱଚ୍ଛତା, ସ୍ନିଗ୍ଧତା, ମାଧୁର୍ଯ୍ୟ ଓ ପାବନତ୍ୱ ; ବ୍ୟକ୍ତ ଓ ଅବ୍ୟକ୍ତ ଭାବରେ ରହିଥିବା ଅଗ୍ନିଠାରୁ ଈଶ୍ୱରଙ୍କର ବ୍ୟକ୍ତ ଓ ଅବ୍ୟକ୍ତ ସତ୍ତା, କିରଣର ସଙ୍କୋଚପ୍ରସାରକାରୀ ଚନ୍ଦ୍ରଙ୍କଠାରୁ ନିର୍ଲିପ୍ତଭାବରେ ଗୁଣଗୁଡ଼ିକୁ ଗ୍ରହଣ ଓ ତ୍ୟାଗ କରିବା ଇତ୍ୟାଦି ଇତ୍ୟାଦି ।

ଏସବୁ ହେଲା ପ୍ରକୃତିଠାରୁ ଶିକ୍ଷା । ପ୍ରାଣୀଚରିତ୍ରରୁ ମଧ୍ୟ ଅନେକ କଥା ଶିକ୍ଷା କରାଯାଇପାରେ । ଯଥା—ସନ୍ତାନ ମୋହରେ ଜାଲରେ ନିଜେ ପଡ଼ି ମୃତ୍ୟୁବରଣ କରିଥିବା କପୋତ ଦମ୍ପତିଙ୍କଠାରୁ ସାଂସାରିକ ମୋହର କୁପରିଣତି, ଅଜଗରଠାରୁ ଯାହା ଯେତେବେଳେ ମିଳିଲା ତାହା ଭୋଗକରି ସନ୍ତୁଷ୍ଟ ରହିବା, ପତଙ୍ଗଠାରୁ ଲୋଭ ଜନିତ ମୃତ୍ୟୁ, ଭ୍ରମରଠାରୁ ସାରସଂଗ୍ରହ, ମତ୍ସ୍ୟଠାରୁ ଜିହ୍ୱା ଲୋଭରେ ବନ୍ସୀ କଣ୍ଟାରେ ଲାଗିବା ପ୍ରଭୃତି ।

ଏହିପରି ଭାଗବତରେ ବିଭିନ୍ନ ପ୍ରକାରର ଗୁରୁଙ୍କ କଥା ଉଲ୍ଲେଖ କରାଯାଇ ଅଛି । ମନୁଷ୍ୟ ଏମାନଙ୍କ ସାନ୍ନିଧ୍ୟରେ ରହି ଅଳ୍ପ ସମୟ ମଧ୍ୟରେ ବହୁତ କଥା ଶିକ୍ଷା କରିପାରିବ । ଏଥିପାଇଁ ଜିଜ୍ଞାସା ଆବଶ୍ୟକ ; କିନ୍ତୁ ବହୁ ସ୍ଥାନରୁ ବହୁକଥା ଶିକ୍ଷଣୀୟ ଥିଲେ ସୁଦ୍ଧା ଆଧ୍ୟାତ୍ମିକ ଶିକ୍ଷା ଦେବା ଗୁରୁଙ୍କୁ ଭାଗବତରେ ଉଚ୍ଚସ୍ଥାନ ଦିଆଯାଇ ତାଙ୍କୁ ଆତ୍ମାସ୍ୱରୂପ ଓ ସାକ୍ଷାତ୍ ଈଶ୍ୱର ବୋଲି କୁହାଯାଇଅଛି । ସନ୍ଥ କବୀର ଦାସ "ଈଶ୍ୱର ପ୍ରଦର୍ଶକ ଗୁରୁଙ୍କ ସ୍ଥାନ ଈଶ୍ୱରଙ୍କଠାରୁ ମଧ୍ୟ ଉଚ୍ଚରେ ଅବସ୍ଥିତ" ବୋଲି ନିମ୍ନଲିଖିତ ଦୋହାରେ କହି ଯାଇଛନ୍ତି—

"ଗୁରୁ ଗୋବିନ୍ଦ ଦୋଉଖଡ଼େ, କାକେ ଲାଗୌଂ ପାୟ ।
ବଲିହାରୀ ଗୁରୁ ଆପନେ, ଗୋବିନ୍ଦ ଦିୟୋ ବତାୟ" ।।

ଆଧ୍ୟାତ୍ମିକ ଜ୍ଞାନ ନିକଟରେ ସାଂସାରିକ ଜ୍ଞାନ ତୁଚ୍ଛାତିତୁଚ୍ଛ ହୋଇଥିବା ଯୋଗୁଁ ପ୍ରକୃତରେ ବେଦ ବେଦାନ୍ତ ବିଶାରଦ ଆତ୍ମଜ୍ଞାନ ଦାତା ଗୁରୁ ସର୍ବୋତ୍କୃଷ୍ଟ ଅଟନ୍ତି । ତାଙ୍କୁ ଦେବତା ତୁଲ୍ୟ ମନେକରି ଅକପଟ ଭକ୍ତିରେ ତାଙ୍କରି ଚରଣତଳେ ଆତ୍ମସମର୍ପଣ କଲେ ଶିଷ୍ୟ ତାଙ୍କର କୃପାର ପାତ୍ର ହୁଏ ଏବଂ ତାଙ୍କଠାରୁ ଭାଗବତ ଧର୍ମ ଶିକ୍ଷା କରି ତାର ଜୀବନ ଧନ୍ୟ ହୋଇଯାଏ । ଏହି ମର୍ମରେ ଭାଗବତରେ ଶ୍ଲୋକ ଲେଖା ଯାଇଅଛି —

ତସ୍ମାଦ୍ ଗୁରୁଂ ପ୍ରପଦ୍ୟେତ ଜିଜ୍ଞାସୁଃ ଶ୍ରେୟ ଉତ୍ତମମ୍ ।
ଶାବ୍ଦେ ପରେ ଚ ନିଷ୍ଣାତଂ ବ୍ରହ୍ମଣ୍ୟୁପଶମାଶ୍ରୟେ ।।
ତତ୍ର ଭାଗବତାନ୍ ଧର୍ମାନ୍ ଶିକ୍ଷେଦ୍ ଗୁର୍ବାତ୍ମଦୈବତଃ ।
ଅମାୟୟାଽନୁବୃତ୍ତ୍ୟା ଯୈସ୍ତୁଷ୍ୟେ ଦାତ୍ମାତ୍ମଦୋ ହରିଃ ।।

———

# ଭାଗବତ ଗାଦି ଓ ମେଳଣ

ଡକ୍ଟର କୁଞ୍ଜବିହାରୀ ଦାଶ, ସଭାପତି, ପୂର୍ବ୍ୟପୂଜା ସଂସଦ

ବହିରେ ଗୋଡ ବାଜିଲେ 'ବିଷ୍ଣୁ' କହିବାକୁ ହୁଏ । ବିଷ୍ଣୁ ନ କଲେ ପାପ ଆସେନାହିଁ, ଲୋକବିଶ୍ୱାସ ପ୍ରଚଳିତ । ବହି ଦେବତା ପରି ମାନ୍ୟ, ଦେବତା ଭାବେ ଗଣ୍ୟ । ଭାଗବତଗାଦି ପୂଜା ପରେ ଏଇ ଧର୍ମ ଧାରଣା ସୃଷ୍ଟି ହୋଇଥିଲା ।

ଜଗନ୍ନାଥ ଦାସଙ୍କ ଭାଗବତ ପୋଥି ଓ ଅନ୍ୟାନ୍ୟ ପୁରାଣ ଉତାରିବା ଏକ ଧର୍ମକାର୍ଯ୍ୟ ବୋଲି ବିବେଚିତ ହେଉଥିଲା । କଥା ଅଛି—

ମୂଢେ ତରନ୍ତି, ଦଢେ ତରନ୍ତି
ମଝିମଝିଆ ବୁଡ଼ି ମରନ୍ତି ।

ଦୃଢ଼ ବିଶ୍ୱାସରେ ଧର୍ମପୋଥି ଉତାରି ବହୁ ବ୍ୟକ୍ତି ରୋଗମୁକ୍ତ ହେଉଥିଲେ । ତାଳପତ୍ର ସୁଲଭ ଶକ୍ତ ଓ ଦୀର୍ଘସ୍ଥାୟୀ । ଶକ୍ତ ଲୁହା ଲେଖନୀର ଛୁରିକାରେ ପତ୍ରକୁ ସମତୁଲ କରି ମଧ୍ୟଭାଗରେ ଗୋଲାକାର ଫୋଡ କରିବାକୁ ହୁଏ । ତା ମଧ୍ୟରେ ଗଳାଯାଏ ମୋଟା ବୋଳା ସୂତା ଦଉଡି । ପୋଥିର ଏ ପଟେ ସେ ପଟେ ବିଚିତ୍ରଭାବେ କଣ୍ଡିତ ପତଳା କାଠପଟା, ସୂତାକୁ ଅଟକାଇ ରଖିବା ଲାଗି ବନ୍ଧା ହୋଇଥାଏ ଶକ୍ତ ଝିଙ୍କ କାଠି । ଆଣ୍ଠୁ ଯୋଡ଼ି ବସି ତା ଉପରେ ପତ୍ର ରଖି କ୍ଷିପ୍ର ଗତିରେ ଚରଚର୍ ଶବ୍ଦରେ ଲେଖନକାର ଲେଖିଯାନ୍ତି । ପୋଥି ଲେଖା ବା ପଢା ସରିଲେ ଶକ୍ତ ଭାବରେ ଛନ୍ଦ ପଡ଼ି ବନ୍ଧାଯାଏ । ଯେଉଁଠୁ ପଢା ବନ୍ଦ ରହେ, ସେଠି ମୟୂର ଚନ୍ଦ୍ରିକାରେ ବା ଉଦଭଦଳିଆ ପକ୍ଷୀ ପରରେ ଚିହ୍ନ ଦିଆଯାଏ । ପୋଥିର ଆସନ ବ୍ୟାସାସନ ଏକ କାଷ୍ଠାସନ । ସେଥିରେ ପୁରାଣକର୍ତ୍ତା ସ୍ୱୟଂ ବ୍ୟାସଦେବ ବିଜେ କରିଛନ୍ତି ବୋଲି କଳ୍ପନା କରାଯାଏ, ଗାଦି ସହିତ ବ୍ୟାସାସନର ପୂଜାର୍ଚ୍ଚନା ହୁଏ । ଭାଗବତ ପରି ରାମାୟଣ, ମହାଭାରତ, ନୃସିଂହପୁରାଣ, ହରିବଂଶ ବା ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରତି ପ୍ରାୟ ସମାନ ମାନ୍ୟତା । ଭାଗବତ ସହିତ ସେମାନେ ବିଜେ କରି ଗାଦିକୁ ପୂଜନୀୟ କରିଥାନ୍ତି । ଅଟୁଳି ବା ଚଉଦଳରେ ଗାଦି ଫୁଲ ଚନ୍ଦନ ଓ ଭୋଗରାଗରେ ଚର୍ଚ୍ଚିତ ହୁଅନ୍ତି । ପିଳିଢ଼ ଉପରେ ପୋଲାଙ୍ଗ ବା କରଞ୍ଜ ତେଲରେ ଦୀପ ଜଳେ । ଦୀପର କ୍ଷୀଣାଲୋକରେ ଭାଗବତ ପୁରାଣାଦି ପଢାଯାଏ ।

କ୍ରମେ ଗାଦିରେ ପୋଥିମାତ୍ରେ ସ୍ଥାନ ଲାଭ କଲା । ଭାଗବତ ଗାଦି ବୋଲି କିଛି ବାଛବିଚାର ରହିଲା ନାହିଁ । ଏହା ହୋଇଉଠିଲା ଏକ ପୋଥିପାଠାଗାର, ସୁପ୍ତ, ଅବ୍ୟବହୃତ , କିନ୍ତୁ ଏହି ଭାବରେ ଶତ ଶତ ବର୍ଷ ଧରି ପ୍ରାଚୀନ ଗ୍ରନ୍ଥସବୁ ସୁରକ୍ଷିତ ହୋଇ ପାରିଲା ଓ ପରେ ପୁସ୍ତକ ରୂପରେ ପ୍ରକାଶ ଲାଭ କଲା । ଧର୍ମ ଭାବରେ ସଂରକ୍ଷିତ ହୋଇ ନ ଥିଲେ ହୁଏତ ପାଣ୍ଡୁଲିପିସବୁ କୀଟଭୁକ୍ତ ଓ ଅବହେଳାରେ ନଷ୍ଟଭ୍ରଷ୍ଟ ହୋଇ ଯାଇଥାନ୍ତା ।

ଜଗନ୍ନାଥଙ୍କ ଭାଗବତର ରଚନାକାଳ ଷୋଡଶ ଶତାବ୍ଦୀ । ଶ୍ରୀମନ୍ଦିରର କଳ୍ପବଟ ତଳେ ପଢ଼ିଲେ 'କହଇ ବିପ୍ର ଜଗନ୍ନାଥ, କୃଷ୍ଣଚରିତ ଭାଗବତ' ଦୋହା

ପ୍ରତିଧ୍ୱନିତ ହେଲା । ଏହି ସ୍ଥାନରେ ହିଁ ଚୈତନ୍ୟ କବି ଜଗନ୍ନାଥଙ୍କୁ 'ଅତିବଡ' ଉପାଧି ଦେଇ ଭକ୍ତଶ୍ରେଷ୍ଠ ବୋଲି ପ୍ରତିପାଦିତ କରିଥିଲେ ଓ ତାଙ୍କ ସହିତ ଅନେକ ଦିନ ପର୍ଯ୍ୟନ୍ତ ଆଲିଙ୍ଗନରେ ଆବଦ୍ଧ ହୋଇଥିଲେ ବୋଲି କିମ୍ବଦନ୍ତୀ ଅଛି ।

କୌଣସି ଓଡ଼ିଆ ଗ୍ରନ୍ଥ ଭାଗବତଭଳି ଲୋକଙ୍କୁ ପ୍ରେଜ କରି ନ ଥିଲା । ଦେଖୁ ଦେଖୁ ଶ୍ରୀମନ୍ଦିରରୁ ମନ୍ଦିରେ ମନ୍ଦିରେ ଭାଗବତ ପାଠ ବ୍ୟାପିଲା । ଭାଗବତର ଜଣେ ବକ୍ତା, ଜଣେ ମୁଖ୍ୟଶ୍ରୋତା । ଉଭୟେ ହବିଷ୍ୟ କରନ୍ତି, ସପ୍ତା ଦିନତକ କଠୋରଭାବେ ଧର୍ମଜୀବନ ଯାପନ କରନ୍ତି । ମନ୍ଦିରମାନଙ୍କରୁ ସାଧାରଣ ଗ୍ରାମ୍ୟ ମନ୍ଦିରରେ ଓ ପ୍ରତ୍ୟେକ ଗୃହଦେବତାଙ୍କ ନିକଟରେ ଭାଗବତ ପାରାୟଣ ହେବାକୁ ଲାଗିଲା । ନଅଙ୍କ ପଡ଼ିଲେ, ହଇଜା, ବସନ୍ତ ବା ମହାମାରୀ ହେଲେ, କିଛି ଦାଉଘାତ ଘଟିଲେ ବହୁମୁଖୀ ଭାଗବତ ପାଠ କରାଗଲା । ମୃତ୍ୟୁ ପୂର୍ବରୁ ଉଚ୍ଚସ୍ୱରରେ ମୁମୂର୍ଷୁ ନିକଟରେ ଅଧ୍ୟାଏ ଭାଗବତ ପଢାଗଲା ; କାରଣ ବିଶ୍ୱାସ ଥିଲା—'ଏ ଜୀବ ମରଣ ନିକଟେ, ବେଗେ ଚିନ୍ତଇ ଅନ୍ୟ ଘଟେ ।'

ସପ୍ତା ବସିଲା ; ସାତଦିନ ଦିପହରେ ଭାଗବତ ଉଜୁଆଁ ହେଲା ; ଭକ୍ତମାନଙ୍କୁ ଅତପାନ୍ନ ବ୍ୟଞ୍ଜନାଦି ଭାଗବତ ଭୋଗ ପରିବେଷଣ କରାଗଲା । ବର୍ଷକେ ଅନ୍ତତଃ ଥରେ ଗ୍ରାମ ମନ୍ଦିରରେ ବା ବ୍ୟକ୍ତିବିଶେଷଙ୍କ ଦିଅଙ୍କ ଘରମାନଙ୍କରେ ସପ୍ତା ବସିଲା, ଲାଗିଗଲା ଅଷ୍ଟପ୍ରହରୀ—ଅଷ୍ଟପ୍ରହର ପର୍ଯ୍ୟନ୍ତ ସଂକୀର୍ତ୍ତନ ସହିତ ଅଖଣ୍ଡ ହରିନାମ ଆବୃତ୍ତି—'ହରେକୃଷ୍ଣ ହରେ ରାମ, ନିତାଇ ଗୌର ରାଧେଶ୍ୟାମ' ଅଷ୍ଟ ପ୍ରହରୀ ପରେ ବହୁ କୀର୍ତ୍ତନମଣ୍ଡଳୀର ସମବେତ ସଂକୀର୍ତ୍ତନ । 'ଅକାମାବେ ଧର୍ମ ମାସମାନଙ୍କରେ ତୀର୍ଥସ୍ଥାନରେ ଭାଗବତ ପାରାୟଣ, ହରିହାଟ, ସପ୍ତାବଡ଼ା, ଅଷ୍ଟପ୍ରହରୀ, ଚବିଶପ୍ରହରୀ, ବହୁମୁଖୀ ଭାଗବତ ପାଠ, ମେଳା, ମେଳଣ, ମଉଛବ ଦେଶରେ ଧର୍ମର ଏକ ହିଲ୍ଲୋଳ ଖେଳାଇ ଦେଲା ।

ଘରେ ଘରେ ବସିଗଲା ଭାଗବତଗାଦି, ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀ । ସନ୍ଧ୍ୟାରେ ଜନମେଳା ଜମିଲା । ଦିନରେ ଯେଉଁ ବିଦ୍ୟାଳୟ, ରାତିରେ ନ୍ୟାୟାଳୟ ବା ଧର୍ମାଳୟ ବସିଲା । ଭାଗବତଙ୍କୁ ହାତ ବଢେଇ ନିଅମ କରିବାକୁ ହୁଏ ଯେ ଦି ପକ୍ଷ ସତ୍ ସତ୍ କହିଯିବେ । ସତ ହୁଡିଲେ, ନିଅମ ଜଟି ନ ମାନିଲେ ଭାଗବତଙ୍କର ଅବମାନନା ହୁଏ, ଘୋର ଅମଙ୍ଗଳ ଘଟେ, ବିଶ୍ୱାସ ଥିଲା । ବ୍ୟୟ ବହୁଳ ମକଦ୍ଦମାରେ ନ ପଶି ଲୋକେ ପଞ୍ଚାୟତ ବସାଇଲେ । ପଞ୍ଚମୁଖୀ ପରମେଶ୍ୱର ସେମାନଙ୍କ ବିଚାରରେ ଭୁଲ୍‌ଭଟକା ରହି ନ ପାରେ—ଏ ଆସ୍ଥା ଜନ୍ମିଥିଲା ।

ଭାଗବତଟୁଙ୍ଗୀ ଗ୍ରାମ୍ୟ ସଂସ୍କୃତିର କେନ୍ଦ୍ରବିନ୍ଦୁ ହୋଇ ଉଠିଲା । ଟୁଙ୍ଗୀରେ ଚଉଦଳଟିଏ, ଚଉଦଳର ତିନିଦିଗ ଲାଲ୍ କରିଆ ବେଢ଼ା, ସାମ୍ନାରେ ଲାଲ୍ ପାଛୁଡ଼ା । ଉଳିଆରେ ମଣ୍ଡଣି, କଳସ । ଚଉଦଳ ଭିତର ଖଟୁଲିରେ ଭାଗବତ ଗାଦି, ପୁଷ୍ପମଣ୍ଡିତ, ଚନ୍ଦନଚର୍ଚ୍ଚିତ । ଭାଗବତଙ୍କ ପୂଜକ ଭାଗବତ ଗୋସାଇଁ, ଭାବେଟ ଓ ହରିନାମ ଗାଇ ଗାଇ ତାଙ୍କର କିଛି ତପସ୍ୟା ଜମିଥାଏ, ଠାକୁରଙ୍କ ହୁକୁମ୍, ଆଜ୍ଞାମାଳ ଦେଇ ସେ କେତେ ରୋଗୀ ଭଲ କରନ୍ତି, କର୍ଣ୍ଣରେ ଗୁରୁମନ୍ତ୍ର ଦିଅନ୍ତି ।

ଭାଗବତଟୁଙ୍ଗୀ ହୋଇ ଉଠିଥିଲା ଏକାଧାରରେ ସଂକୀର୍ତ୍ତନ ଓ ସଙ୍ଗୀତ ଶିକ୍ଷା ଗୃହ, ଯାତ୍ରା ଥିଏଟରର ବେଶଭୂଷଣାଳୟ ଓ 'ତାଗାଘର'—କୁସ୍ତି କସରତ୍, ମୁଦ୍‌ଗରବୁଲା ଓ ଖଣ୍ଡାଖେଳ ଆଦି ବିଭିନ୍ନ ଶକ୍ତିଚର୍ଚ୍ଚାର କେନ୍ଦ୍ର, ଦୈହିକ ଓ ମାନସିକ ଶକ୍ତି ଅର୍ଜନର ଏକ ସମନ୍ୱୟ କ୍ଷେତ୍ର ।

ଗ୍ରାମେ ଗ୍ରାମେ ଏତେ ଧର୍ମାନୁଷ୍ଠାନ ଚଳ୍ଲି ବି ଲୋକ ଆତ୍ମା ପରିତୃପ୍ତି ଲାଭ କରି ନ ଥିଲା । ଲୋଡ଼ା ହେଉଥିଲା ଅଧିକ ସାମାଜିକ ଓ ସାଂସ୍କୃତିକ ଐକ୍ୟ । ସେଥିଲାଗି ସୃଷ୍ଟି ହେଲା ମେଳଣ—ଦେବତା ଓ ମଣିଷର ଏକ ମିଳନ ସ୍ଥଳ ।

ମେଳା ଓ ମେଳଣ ମଧ୍ୟରେ କିଛି ତାରତମ୍ୟ ଥିଲା । ମେଳାରେ କୌଣସି ଉଦ୍ଦିଷ୍ଟ ଦେବତାଙ୍କ ନିକଟକୁ ନିର୍ଦ୍ଦିଷ୍ଟ ଦିନରେ ଯିବାକୁ ହୁଏ । ଯଥା—ପୁରୀର ଲୋକନାଥ ମେଳା, ବାଲେଶ୍ୱରର ଚନ୍ଦନେଶ୍ୱର ମେଳା । କିନ୍ତୁ ମେଳଣକୁ ଦେବତାମାନେ ବିଜେ କରନ୍ତି, ଭକ୍ତମାନେ ଏକସ୍ଥଳରେ ପୁଞ୍ଜୀଭୂତ ଏକ ଦେବତାଙ୍କ ବିଭିନ୍ନ ରୂପ ଦର୍ଶନ କରନ୍ତି । ମେଳଣ ଦିନେ, ତିନିଦିନ, ପାଞ୍ଚଦିନ ବା ସାତଦିନ ହୁଏ ।

ରାଧାକୃଷ୍ଣ ମେଳଣ ରଜୋଗୁଣବାପନ୍ନ, ଆଡମ୍ବରମୟ । ଏଥିରେ ବାଜା, ବାଣ, କଳଘୋଡ଼ା ନାଟ, ବୁଢ଼ାବୁଢ଼ୀ କୌତୁକ ସୁଆଙ୍ଗ, ଯାତ୍ରା, ଖେଳକୁଦ୍ଧି ଅଧିକ । ଠାକୁର ଛତିତ୍ରାହେବା ନା, ଯୋଡ଼ି ନାଗରା, ଘଣ୍ଟମାଦଳ, ଯାତ୍ରା, ଆଖେଡ଼ାପିଲା ନାଟ, କଳଘୋଡ଼ା ନାଟ ଆଦି ରାଜପଟୁଆର ମେଳଣରେ ବିଜେ କରନ୍ତି । ମେଳଣରେ ଧାଡ଼ି ଧାଡ଼ି ହୋଇ ମଣ୍ଡଳାକାରରେ ବହୁ ପଥର ଖୁଣ୍ଟି ପୋତା ହୋଇଥାଏ । ତାପରେ କାନ୍ଧିଆଳୀମାନେ ଚଉଦଳ ରଖନ୍ତି, ପଣ୍ଡା ବସି ପାଦୁକ ବିତରଣ କରେ । ରାଧାକୃଷ୍ଣ ମେଳଣ ଆକାରରେ ବିପୁଳ, ଶତାଧିକ ବିଭିନ୍ନ ଆକାର ପ୍ରକାରର ଚଉଦଳରେ ଠାକୁର ଏଠି ବିଜେ କରିଥାନ୍ତି । କେତେକ ସେବତୀ, କଦମ୍ବ, ପଦ୍ମ ଓ ଅଷ୍ଟସଖୀ ଆଦି ସୋଲ, ହରି ଓ ରଙ୍ଗିନ ଫୁଲର ଏକ ଏକ ନିକୁଞ୍ଜ । ବଲଙ୍ଗାର ବକ୍ରେଶ୍ୱର କାଷ୍ଠର ଏକ ଅପୂର୍ବ ରଥ ବା ମନ୍ଦିର । ବକ୍ରେଶ୍ୱର ଓ ସରସ୍ୱତୀ ପୁରର ସୁସଜ୍ଜିତ ଚଉଦଳକୁ ବୋହି ଆଣିବାକୁ ପ୍ରାୟ ୩୨ ଜଣ କାନ୍ଧିଆଳୀ ଲାଗିଥାନ୍ତି ।

ଭାଗବତ ମେଳଣ ନିରାଡ଼ମ୍ବର ଓ ସାତ୍ତ୍ୱିକତା ପୂର୍ଣ୍ଣ । ବିନୟ, ସ୍ନିଗ୍ଧତା ଓ ଶାନ୍ତଭାବ ଏଠି ରାଜତ୍ୱ କରୁଥାଏ । ପାଞ୍ଚ ସାତ, ଖୁବ୍ ବେଶୀ ହେଲେ ୫୦ ଦୋଳ ଏହି ମେଳଣରେ ବିଜେ କରିଥାନ୍ତି । ଆଗରୁ ସପ୍ତା ବସିଥାଏ । ସପ୍ତା ବଡ଼ାଦିନ ମେଳଣ ହୁଏ, ଚଉଦଳଗୁଡ଼ିକ ଏକଚାଳିଆ, ଦୁଇଚାଳିଆ ଆକାରରେ କ୍ଷୁଦ୍ର । ଅଧିକାଂଶ ବ୍ୟକ୍ତିଗତ ଠାକୁର ହୋଇଥିବାରୁ ବେଶଭୂଷଣରେ ଦାରିଦ୍ର୍ୟର ସୂଚନା ମିଳୁଥାଏ ।

ପହିଲେ ଗାଁର ଥାନପତି ଠାକୁର ମେଳଣରେ ବିଜେ କରିଥାନ୍ତି । ତାଙ୍କ ସାମ୍ନାରେ ଛତି ଟଣା ହୋଇଥାଏ, ବାନା ଉଡୁଥାଏ, ମଙ୍ଗଳ କଳସ ବସିଥାଏ । ବାତିକ ନାଲିଆରୁ ପୋଲ୍ଲଙ୍ଗତେଲ ଢାଳି, ଢାଳି କନାର ମଶାଲ ଜଳାଉଥାଏ । ଥାନପତି ଅତିଥି ଠାକୁରମାନଙ୍କୁ ସାଦରେ ମେଳଣକୁ ପାଛୋଟି ଆଣନ୍ତି । ମେଳଣ ଆଗରୁ ପୁଷ୍ପତୁଳସୀ ଆଦି ଉପଚାରରେ ଠାକୁରମାନଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଠାକୁର ମେଳଣ ପାଖେ ପହଞ୍ଚଲା ପରେ ଥାନପତିଙ୍କ ପକ୍ଷରୁ

ସଂକୀର୍ତ୍ତନ କରି ଓ ଘଣ୍ଟାମାଦଳ ବଜାଇ ଅତିଥିଠାକୁରଙ୍କ ଅଭ୍ୟର୍ଥନା କରି ଆଣିବାକୁ ହୁଏ । ଠାକୁରଙ୍କ ମେଳା ଉଠିବା ମାତ୍ରେ ଦର୍ଶନାର୍ଥୀ ପ୍ରତ୍ୟେକ ଠାକୁର ପାଖେ ମୁଣ୍ଡିଆ ମାରି ପାଦୁକ ପାଏ ।

ପ୍ରାୟ ସନ୍ଧ୍ୟାବେଳକୁ ଡାଟିଆ ବା ଆଟିକାରେ ଭୋଗସାମଗ୍ରୀ ଆସେ । ଏହା ଅଧିକାଂଶରେ ଫଳା ଉଖୁଡା, ତା ଉପରେ ଚୁଡାପୁଆ, ଛାଚିଖଇ, ଖଜା, ଶକର, ଜଲବୀ, ମିଠାଇ, ବୁଡାଘଷା ବା ଛଡ ପାଚିଲା କଦଳୀ । ହାଣ୍ଡି ଉପରେ ଠାକୁରଙ୍କ ମର୍ଯ୍ୟାଦା ଏକ ମୂର୍ତ୍ତି ଲାଲ୍ କରିଆ, ଖୋଳପୂଡା ବ ବଡକୁ ଖଣ୍ଡେ ଧଳା ଟାମୁଛା । ଡିଅଁଙ୍କ ବର୍ଷକ ପିନ୍ଧା ପ୍ରାୟ ମେଳଣରୁ ମିଳିଥାଏ ।

ସନ୍ଧ୍ୟାକୁ ମେଳଣ ପ୍ରାୟ ମହଲଣ ପଡେ । ଠାକୁରମାନେ ପରସ୍ପରଠାରୁ ବିଦାୟ ନିଅନ୍ତି । ଏହା ବଡ ହୃଦ୍ୟ । ଏକାବେଳକେ ଅଧିକାଂଶ ବାଜା ବାଜେ । ସୁବିଧା ଅନୁସାରେ ଯେଉଁ ଠାକୁର ଯେତେବେଳେ ଉଠନ୍ତି, ଶେଷକୁ ଥାନପତି ଗ୍ରାମକୁ ଫେରନ୍ତି । ତାପରେ ପ୍ରାୟ ଶୂନ୍‌ଶାନ୍, ହାଟ ଜମେ, ଯାତ୍ରାରମ୍ଭ ହୁଏ । ଧୂଳିରେ ଲମ୍ବ ଲମ୍ବ ହୋଇ ଶହ ଶହ ଶୋଇପଡନ୍ତି । ଯାତ୍ରାଦେଖାଳୀମାନେ ସକାଳେ ନିଦ ମଳମଳ ଆଖିରେ ଦଳ ଦଳ ହୋଇ ମେଳଣରୁ ଫେରୁଥାନ୍ତି । କୋଉଠି ଯାତ୍ରା କୁମାରେ ହେଲା ସେଇ କଥା ଚର୍ଚ୍ଚା ପଡିଥାଏ । କାହା କାହା ତୁଣ୍ଡରୁ ପଦେ ଦପଦେ ଯାତ୍ରାଗୀତ ବାହାରି ପଡୁଥାଏ—

'ବାରିଜାକ୍ଷି, ମନରୁ ମାନ ମାଟିଦେ ରେ'

———

# ଜଗନ୍ନାଥ ଦାସଙ୍କ କାବ୍ୟଚେତନାରେ ସୃଷ୍ଟିତତ୍ତ୍ୱ

ଡକ୍ଟର ନରେନ୍ଦ୍ରନାଥ ମିଶ୍ର

ସୃଷ୍ଟି ପାଳନ ସଂହାରଣ । ଏ ସର୍ବ ଆତ୍ମାର ଭିଆଣ ॥

ଏକାଦଶ ସ୍କନ୍ଧ—୨୯ ଅଧ୍ୟାୟ

ଜଗନ୍ନାଥ ଦାସ ଥିଲେ ପ୍ରତ୍ୟୟବାଦୀ କବି । ସେ ଏକ ବିଶ୍ୱାସସମ୍ଭୂତ ବିଶ୍ୱରେ ବାସ କରୁଥିଲେ । ସୁଦୂର ନିହାରିକାଠାରୁ ସୃଷ୍ଟିର ଆଦିମ ରହସ୍ୟ ତାଙ୍କ ପରଜ୍ଞାନ ପରିଧି ମଧ୍ୟରେ ଆବଦ୍ଧ ଥିଲା । ଜଗତର ସକଳ ବସ୍ତୁକୁ ସେ ତୁଚ୍ଛ ମନେ କରୁଥିଲେ । କ୍ଷୁଦ୍ର ଓ ତୁଚ୍ଛ, କ୍ଷଣିକ ଓ ଅସାର ଜଗତରେ ସେ ମହାନ ଓ ଶାଶ୍ୱତର ସନ୍ଧାନ କରିଥିଲେ । ଆଧୁନିକ ସଂଶୟପୀଡ଼ିତ ମନର ଅଶାନ୍ତି ଓ ଅସନ୍ତୋଷ ସମୀକରଣରେ ତାଙ୍କ କାବ୍ୟଲୋକର ଦାନ ଅନସ୍ୱୀକାର୍ଯ୍ୟ । ପୁରାଣ ପରମ୍ପରାରେ କଳ୍ପିତ ଜଗନ୍ନାଥ ଦାସଙ୍କ କାବ୍ୟ ଜଗତ ଅଲୌକିକତା, ଅତିରଞ୍ଜନରେ ପରିପୂର୍ଣ୍ଣ ଥିଲା । ମାତ୍ର ଏହା ଥିଲା ବିଶ୍ୱାସର ନିଷ୍ଠା ଉପରେ ପ୍ରତିଷ୍ଠିତ । ଏଇ ବିଶ୍ୱାସ ସମ୍ଭୂତ ବିଶ୍ୱ ପରମ୍ପରାର ଅଟଳ ମେରୁ ଉପରେ ପ୍ରତିଷ୍ଠିତ ଥିଲା । ତଥାପି ଉଦାର ଆଦର୍ଶର ଏଥିରେ ଅଭାବ ନଥିଲା । ଅକୁତୋଭୟ ମାନବ ମୈତ୍ରୀର ଧାରକ ଓ ବାହକ ଥିଲା ତାଙ୍କର କାବ୍ୟଚେତନା । ସତ୍ୟର ସର୍ବମୟ ସତ୍ତା ଉପଲବ୍ଧି ପାଇଁ, ସୃଷ୍ଟିର ଗୋପନ ରହସ୍ୟ, ପ୍ରକୃତିର ଛଳନା ଓ ମାୟାର ଯବନିକା ସେ ଭେଦ କରିବାକୁ ଲୋଡ଼ିଥିଲେ ।

ସୃଷ୍ଟି ତତ୍ତ୍ୱ ଏକ ପୁରାଣ ପରମ୍ପରାର ଅଙ୍ଗୀଭୂତ । ଇଜିପ୍ଟ, ମେସୋପଟାମିଆ ଆଦି ପ୍ରାଚୀନ ସଭ୍ୟତାଠାରୁ ଆମ ଯୁଗର ଆଦିମ ଜାତିଙ୍କ ବିଶ୍ୱାସରେ ସୃଷ୍ଟିତତ୍ତ୍ୱ ପରିସରପୁଷ୍ଟ । ପ୍ରାଚୀନ ବିଶ୍ୱାସରେ ସ୍ଥାନ ଓ କାଳ ସବୁକିଛି ସ୍ଥୂଳ ଓ ଜୀବନ୍ତ ସତ୍ତାରେ ଆଭାସିତ । ପ୍ରାଚୀନ ଇଜିପ୍ଟରେ ପ୍ରଳୟ ସମୁଦ୍ରରେ ଉଦୀୟମାନ ସୂର୍ଯ୍ୟଙ୍କୁ ସମସ୍ତ ସୃଷ୍ଟିର ମୂଳ ବୋଲି ବିଶ୍ୱାସ କରାଯାଉଥିଲା । ଏବେ ମଧ୍ୟ ଆଦିମ ବିଶ୍ୱାସ ପ୍ରକୃତିର ଦୃଶ୍ୟମାନ ଉପାଦାନ ଭିତ୍ତିରେ ସୃଷ୍ଟିର କଳ୍ପନା କରାଯାଉଥାଏ । ଏଇ ବିଶ୍ୱାସର ଆଚ୍ଛାଦନ ମଧ୍ୟରେ ଭାରତୀୟ ବୈଦିକ ସାହିତ୍ୟରେ ପ୍ରଥମେ ସୃଷ୍ଟିର ଏକ ଅରୂପ ଭାବମୟ କଳ୍ପନା ସ୍ଥାନ ପାଇଲା । ଋକ୍‌ବେଦର ପୁରୁଷ ସୂକ୍ତରେ ଓ ନାରଦୀୟ ସୂକ୍ତରେ ସୃଷ୍ଟିର ଗୋପନ ରହସ୍ୟର ଇଙ୍ଗିତ ମିଳେ । ଆଦି ପୁରୁଷ (ବିଷ୍ଣୁ) ଅସଂଖ୍ୟ ମସ୍ତକ, ଅସଂଖ୍ୟ ଚକ୍ଷୁ, ଅସଂଖ୍ୟ ପାଦମୟ ରୂପରେ ସର୍ବପ୍ରକାର ଏ ଭୂମି, ସ୍ୱର୍ଗକ୍ଷେତ୍ର ଟୋ ସୃଷ୍ଟ ସ୍ଥାନକୁ ଆବୃତ୍ତ କରି ରହିଥିଲେ । ଭାଗବତର ସୃଷ୍ଟି ତତ୍ତ୍ୱ ବର୍ଣ୍ଣନା ବହୁ ପରିମାଣରେ ଏଇ 'ପୁରୁଷ' ସୂକ୍ତ ଉପରେ ଆଧାରିତ ; କିନ୍ତୁ ବିଭିନ୍ନ ପୁରାଣର ସାର ନିର୍ଯ୍ୟାସ ମଧ୍ୟ ଏଥିରେ ଗୃହୀତ । ସେଥିପାଇଁ ଋକ୍‌ବେଦୀୟ କଳ୍ପନା ଭାଗବତରେ ନୂତନ ଇଙ୍ଗିତ ବହନ କରିଛି । ଋକ୍‌ବେଦର 'ବିରାଟ'କୁ ବ୍ରହ୍ମ+ଅଣ୍ଡ ରୂପେ ଓ ଏହି ଅଣ୍ଡ'ର ସ୍ରଷ୍ଟା ବ୍ରହ୍ମାଙ୍କୁ ହିରଣ୍ୟଗର୍ଭ ରୂପେ କଳ୍ପନା କରାଯାଇଛି । ଭାଗବତରେ ଏହି ହିରଣ୍ୟଗର୍ଭ ପୁଣି ସୂର୍ଯ୍ୟ । 'ମୃତ' ଅଣ୍ଡକୁ ଜୀବନ ଦାନ କରିଥିବାରୁ ସୂର୍ଯ୍ୟଙ୍କ ଅନ୍ୟ ନାମ 'ମାର୍ତ୍ତଣ୍ଡ' । ଏକ ମୃତଅଣ୍ଡ ନ୍ୟାୟ ସୁପ୍ତ ବ୍ରହ୍ମାଣ୍ଡ ଉପରେ ସହସ୍ର ବର୍ଷ ରଶ୍ମିପାତ କରି ସୂର୍ଯ୍ୟ 'ଜୀବ ପୁରୁଷ'

ବା 'ବ୍ୟକ୍ତ ପୁରୁଷ'ର ସୃଷ୍ଟି କରିଥାନ୍ତି । ତେଣୁ ସବୁ କିଛି ସୃଷ୍ଟି ମୂଳରେ ସୂର୍ଯ୍ୟ ବିଦ୍ୟମାନ । ଏହି ସୂର୍ଯ୍ୟ ମଧ୍ୟ ସୃଷ୍ଟିକର୍ତ୍ତା—ପୁରୁଷ ସୂକ୍ତର ଆଦି ପୁରୁଷ । ଜୀବ ଓ ଜଗତର ସମସ୍ତ ଦୃଶ୍ୟମାନ ସତ୍ତା ସୂର୍ଯ୍ୟଙ୍କ ଦାନ । ଜ୍ଞାନ ତପଃ ଓ ସତ୍ୟଲୋକ ଚିନ୍ମୟ କଳ୍ପନା, ତଥା ନାନା ଦ୍ୱୀପ ଓ ଦେଶଭାଗର କଳ୍ପନା ଦ୍ୱାରା ଭାଗବତରେ ସୃଷ୍ଟ ଜଗତର ଏକ ପରିପୂର୍ଣ୍ଣ ପରିଚୟ ଦାନର ପ୍ରୟାସ ହୋଇଛି ।

କାରଣାର୍ଣ୍ଣବ ବା କ୍ଷୀର ସମୁଦ୍ରରୁ ଅନନ୍ତଶାୟୀ ବିଷ୍ଣୁଙ୍କ ନାଭିକମଳରୁ ବ୍ରହ୍ମାଙ୍କ ସୃଷ୍ଟି ଏକ ପୁରାଣକାବ୍ୟିକ କଳ୍ପନା । ଜଳରୁ ଜଗତ ସୃଷ୍ଟି—ଏହି ଆଦିମ ଧାରଣା ଏଥିରେ ପ୍ରକାଶିତ । କିନ୍ତୁ ପୁରାଣର ଛାୟାଲୋକରୁ 'ଚିନ୍ତା'ର ଆଲୋକରେ ସୃଷ୍ଟିର ଧାରଣା ପ୍ରକାଶ ପାଇଛି 'ଅବ୍ୟକ୍ତ'ରୁ ବ୍ୟକ୍ତ, ବା ଶୂନ୍ୟରୁ ସୃଷ୍ଟି ରୂପେ । ଦୃଶ୍ୟମାନ ମାଟି, ଆକାଶ, ଜଳ, ଶକ୍ତିର ଉତ୍ସ ବାୟୁ ଅଗ୍ନି ଓ ସୂର୍ଯ୍ୟ ଆଦି ସକଳ ଦେହରେ ଏକ 'ପରମସତ୍ତା'ର ବିଦ୍ୟମାନତା ଧାରଣାରୁ 'ଚିନ୍ତା''ଜଗତର ସୃଷ୍ଟି । ଜଗନ୍ନାଥ ଦାସଙ୍କ 'ତୁଳାଭିଣା', 'ଅର୍ଥ କୋଇଲି' ଆଦିରେ ଶୂନ୍ୟରୁ ସୃଷ୍ଟିର ବିଶଦ ବର୍ଣ୍ଣନା ଦେଖିବାକୁ ମିଳେ । ବୈଦିକ ସାହିତ୍ୟକୁ ତଥା ପରବର୍ତ୍ତୀ ସମଗ୍ର ଭାରତୀୟ ସାହିତ୍ୟକୁ 'ଶୂନ୍ୟରୁ ସୃଷ୍ଟି' କଳ୍ପନାଟି କଳିଙ୍ଗ ସଭ୍ୟତାର ଦାନ ବୋଲି ପଣ୍ଡିତ ନୀଳକଣ୍ଠ ମନେ କରନ୍ତି । ଋକ୍‌ବେଦର 'ନାରଦୀୟ' ସୂକ୍ତରୁ ଏହାର ପ୍ରଥମ ସୂଚନା ମିଳେ ।

"ତମ ଅସୀତ୍ ତମସା ଗୂଢ଼ ମଗ୍ରେଃ
ପ୍ରକେତଂ ସଲିଳଂ ସର୍ବମା ଇଦଂ
ତୁଚ୍ଛେନାଭ୍ୱପିହିତଂ ଯଦାସୀତ୍
ତପସସ୍ତନ୍ମହିନାଽଜାୟତୈକଂ ।"

ପହିଲେ ଅନ୍ଧାରକୁ ଅନ୍ଧାର ଘୋଟିଥିଲା । ଏସବୁ ସଂକେତହୀନ ଜଳ ଥିଲା । ଏଇ ଶୂନ୍ୟରୂପ ମାୟାରେ ଯେତେବେଳେ ଘେରି ହୋଇଗଲା, ସେତେବେଳେ ତାର ବୃହତ ହେବାର ଚେଷ୍ଟାରୁ 'ଏକ' ପ୍ରକାଶ ପାଇଲା । (ଓଡ଼ିଆ ସାହିତ୍ୟର କ୍ରମ ପରିଣାମ-ପଣ୍ଡିତ ନୀଳକଣ୍ଠ ପୃ: । ୧୭୫ । ପ୍ରଥମ ଭାଗ) । 'ଅଣାକାର ବା ଶୂନ୍ୟରୁ ସୃଷ୍ଟିର କଳ୍ପନ କୁ ଜଗନ୍ନାଥ ଦାସ "ତୁଳାଭିଣା"ରେ ପ୍ରକାଶ କରନ୍ତି ସୁନ୍ଦର ଭାବରେ —

'ଅଣାକାର ଯେ ଜ୍ୟୋତି ରୂପ । ଯେଉଠାରେ ନାହିଁ ରୂପ ରେଖ ॥
ଧୂମ୍ର ବର୍ଣ୍ଣର ପ୍ରାୟ ଦିଶେ । ଅନ୍ଧକାରଟି ଯେ ପ୍ରକାଶେ ॥
ବ୍ରହ୍ମାଣ୍ଡ ଅନ୍ଧକାର ହୋଇ । ଜ୍ୟୋତି ରୂପରେ ଥିଲ ରହି ॥
ସେଠାରୁ ଓଁକାର ଜନ୍ମିଲା । ଓଁକାରୁ ସାକାର ଯେ ହେଲା ॥

x x x

ଅନ୍ଧକାରଟି ଗୁପ୍ତ ହେଲା । ଓଁକାରୁ ବ୍ରହ୍ମ ପ୍ରକାଶିଲା ॥
ଏମନ୍ତେ ହୋଇଲା ଦିବସ । ଦିବସୁଁ ଜଗତ ପ୍ରକାଶ" ॥

ଜଗନ୍ନାଥଙ୍କ ଏକାଦଶସ୍କନ୍ଧର ଚତୁର୍ଥ ଅଧ୍ୟାୟରେ 'ଅନ୍ତରୀକ୍ଷ'ଙ୍କ ମୁଖରେ ସୃଷ୍ଟିତତ୍ତ୍ୱର ଅନୁରୂପ ବର୍ଣ୍ଣନା ବିଦ୍ୟମାନ । ନିର୍ଲିପ୍ତ ଅନନ୍ତ ଅନାଦି ପୁରୁଷ ସୃଷ୍ଟିର ପରମ କାରଣ । ଏ ମାୟାମୟ ସୃଷ୍ଟିର ସେ ସ୍ରଷ୍ଟା । ସୃଷ୍ଟି ତାଙ୍କର ଏକ ଖେଳ । 'ତେଜ' ଅନ୍ତରାଳରେ ବିଦ୍ୟମାନ ସୃଷ୍ଟିର ପରମ କାରଣଙ୍କ ଇଚ୍ଛାରେ 'କାଳ'ର ସୃଷ୍ଟି କାଳରୁ 'ଆତ୍ମା' ଓ ଆତ୍ମାକୁ ଆଶ୍ରୟ 'ମାୟା' ସକଳ ଜୀବ ଜଗତର ଜନ୍ମଦିଏ । ଏଇ ଜୀବ ପ୍ରକୃତି । ବାୟୁବଳରେ ନୀରବିନ୍ଦୁ ଆନ୍ଦୋଳିତ ହୋଇ ନାନା ଆକାର ଧାରଣ କଲାଭଳି ବିରାଟ ପୁରୁଷ ଈଶ୍ୱର ମାୟାରେ ପ୍ରବେଶ କରି ସୃଷ୍ଟି ସର୍ଜନା କରନ୍ତି । ଏଇ ବିରାଟପୁରୁଷ ବା ଆତ୍ମ ପୁରୁଷ ଜୀବକୁ ଭୁଞ୍ଜାଇ ଭୋଗ କରନ୍ତି ।

ପଦ୍ମପତ୍ରରେ ନୀରବିନ୍ଦୁ ଭଳି ଏହାଙ୍କୁ ମାୟା ସ୍ପର୍ଶ କରେ ନାହିଁ । ସମସ୍ତ ଜୀବ ଜଗତ ଈଶ୍ୱରଙ୍କ ମାୟାର ବଶୀଭୂତ ହୋଇ ଇନ୍ଦ୍ରିୟ ସାହାଯ୍ୟରେ ଭୋଗ କଲେତେ । ନିଜ ଦେହ ଘେନି ଅହଂକାର କରେ । ଦେହର ବନ୍ଧନରେ ପଡ଼େ । ନାନା ଦେହ ଭୋଗ କରେ ।

ସୃଷ୍ଟି ଓ ପ୍ରଳୟର ଅନାଦି ବା 'ଶୂନ୍ୟ'ର ହନ୍ତା ନିର୍ଗୁଣ ନିରାକାର ସେଇ ଆଦି ସତ୍ତା—ଆଦିକନ୍ଦ । ସମସ୍ତ ତେଜରାଜି ତାଙ୍କଠାରୁ ଆସି ପ୍ରଳୟକାଳରେ ପ୍ରଚଣ୍ଡ ବେଗରେ ବ୍ରହ୍ମାଣ୍ଡ ମଧ୍ୟରେ ପ୍ରବେଶ କରେ । 'ଭୂ ଭୁବ ଓ ସ୍ୱଃ—ତିନି ଲୋକ ଦ୍ୱାଦଶ ସୂର୍ଯ୍ୟର ତେଜରେ ଅନନ୍ତ ମୁଖଜାତ ଅଗ୍ନିରେ ଶତବର୍ଷ ଧରି ଦଗ୍ଧ ହୁଏ । ପୁଣି ଶତବର୍ଷ ଧରି ହସ୍ତୀଶୁଣ୍ଡ ଭଳି ମେଘ ବର୍ଷାହୁଏ । ବହୁଳ ଜଳରେ ସୃଷ୍ଟି ନାଶ ହେବା ଦେଖି "ବିରାଟ ପୁରୁଷ" ତିନିଭୁବନ ଛାଡ଼ି ବ୍ରହ୍ମ ଶରୀରରେ ଲୀନ ହୁଅନ୍ତି । ଜଗତମୋହିନୀ ବିଷ୍ଣୁଙ୍କ ମାୟାରେ ସୃଷ୍ଟି ଓ ପ୍ରଳୟ ଆବର୍ତ୍ତିତ ହେଉଥାଏ ।

ଆଧୁନିକ ଯୁଗରେ ଜଡ଼ ଓ ଚେତନାର, ପଦାର୍ଥ ଓ ଶକ୍ତିର କ୍ରିୟା ବିକ୍ରିୟା ଉପରେ ସୃଷ୍ଟିର ରହସ୍ୟ ଭେଦରେ ଦର୍ଶନ ଓ ବିଜ୍ଞାନସମ୍ମତ ପ୍ରୟାସ ପ୍ରକାଶ ପାଉଅଛି । ପୁରାଣ କାବ୍ୟର କଳ୍ପନାର ସୀମା ସଦା ସଙ୍କୁଚିତ ହେଉଛି । ପ୍ରାଚୀନ କଳ୍ପନାର ସମସ୍ତ ଜଗତ, ତୁଚ୍ଛ ଧୂଳିକଣାରୁ ଗ୍ରହନିହାରିକା ପର୍ଯ୍ୟନ୍ତ ଏକ ଅନୁପମ ପ୍ରାଣସତ୍ତାରେ ପୂର୍ଣ୍ଣ ଥିଲା । ପ୍ରାଚୀନର ବ୍ୟକ୍ତି ସତ୍ତାର ଅହଂକାର ନ ଥିଲା । ବ୍ୟକ୍ତି ସମାଜର ଓ ସମାଜ ପ୍ରକୃତି ଜଗତର ଏକ ଅଙ୍ଗ ରୂପେ ଏକ ମହତ୍ତର ବିଶ୍ୱସତ୍ତା ବା ଶକ୍ତିର ଇଙ୍ଗିତରେ ଚାଳିତ ବୋଲି ବିଶ୍ୱାସ ଥିଲା । ଅନୁଭୂତିର ଉତ୍ତାପରେ, ଆବେଗର ପ୍ରେରଣାରେ ଓ ଆବେଗର ଅଭିଭୂତି ମଧ୍ୟରେ ଜୀବନ ଓ ଜଗତକୁ ସେ ବ୍ୟାଖ୍ୟା କରୁଥିଲା । ପ୍ରାଣୀୟ ସତ୍ତା ଓ ରୂପମୟ କ୍ରିୟାର ଆଧାର ମଧ୍ୟରେ ତାହାର କଳ୍ପନା ସଂଗ୍ରନ୍ଥିତ ହେଉଥିଲା । ତା'ପାଇଁ ଜଡ଼ ଓ ଜୀବନର କୌଣସି ପାର୍ଥକ୍ୟ ନଥିଲା । ଜଗତ ତା'କୁ ଶୂନ୍ୟ ଲାଗୁ ନଥିଲା ; ଜୀବନ ତାକୁ ଦୁର୍ବହ ବୋଧ ହେଉ ନଥିଲା । ମନୁଷ୍ୟ, ଜନ୍ତୁ, ବୃକ୍ଷ ସବୁଥିରେ ସେ ପ୍ରାଣ ସତ୍ତା ଆରୋପ କରୁଥିଲା । ଆଧୁନିକ ଯୁଗରେ ବୌଦ୍ଧିକ ନିର୍ଲିପ୍ତତା ସତ୍ୟସନ୍ଧାନର ଏକ ମୂଳ ରୂପେ ଗୃହୀତ ; କିନ୍ତୁ ଏ ସତ୍ୟ'ର ମୂଳ ତଥ୍ୟ । ତଥ୍ୟ ସର୍ବଦା ଭ୍ରାନ୍ତି ଓ ପ୍ରମାଦ ଜଡ଼ିତ । ମାତ୍ର ଏକ ଅଭ୍ରାନ୍ତ 'ସତ୍ୟ' ଲୋକର ଉତ୍ସମୁଖରେ ପ୍ରାଚୀନ କଳ୍ପନା ଚାଳିତ ହେଉଥିଲା । ଜଗନ୍ନାଥଙ୍କ କାବ୍ୟଚେତନାରେ ସୃଷ୍ଟିତତ୍ତ୍ୱର ମୂଳରେ ଏହି ସତ୍ୟର ଜୀବନ୍ତରୂପ ଆଶ୍ରିତ । କୌଣସି ଖଣ୍ଡ ଓ କ୍ଷୁଦ୍ରରେ 'ସତ୍ୟ'ର ଜଗତ ସୀମାବଦ୍ଧ ହୋଇ ନପାରେ । ତେଣୁ ଜଗନ୍ନାଥଙ୍କ ସତ୍ୟ ଦୃଷ୍ଟି ଆଜିର କାବ୍ୟ ଚେତନାରେ ମଧ୍ୟ ମୂଲ୍ୟବାନ ବିବେଚିତ ହୋଇପାରେ । ଜଗନ୍ନାଥଙ୍କ ସ୍ତବମୟ ଭାଷାରେ ଏହାରି ଇଙ୍ଗିତ ବିଦ୍ୟମାନ ।

ସତ୍ୟ ପରମାନନ୍ଦ ହରି । ଯା ଭାବେ ଭବ ସତ୍ୟ କରି ।।<br>
ଏମନ୍ତ ସତ୍ୟ ରୂପ ଯାର । ତା' ପାଦେ ମୋର ନମସ୍କାର ।।

(ଭାଗବତ । ପ୍ରଥମ-ସ୍କନ୍ଧ ।)

---

ସୂଚନା ଗ୍ରନ୍ଥ :—1. Before philosophy—Pelican Books A198
2. The philosophy of Srimad-Bhagavata. Dr. S. Bhattacharya, Visva-Bharati—1960

# ଭାଗବତର ଭାଷା

ଡକ୍‌ଟର ବଂଶୀଧର ମହାନ୍ତି

ଜଗନ୍ନାଥ ଦାସଙ୍କ ଭାଗବତର ଭାଷା ଓଡ଼ିଆ ଭାଷା ବିକାଶର ଗତିପଥରେ ଏକ କ୍ରାନ୍ତିକାରୀ ବିରାଟ ପରିବର୍ତ୍ତନ । ଜଗନ୍ନାଥ ଦାସଙ୍କ ପୂର୍ବରୁ ଓଡ଼ିଆରେ ଲିଖିତ ମହାଭାରତ, ଚଣ୍ଡୀପୁରାଣ, ଜଗମୋହନ ରାମାୟଣ ପ୍ରଭୃତିର ଭାଷାରେ ପ୍ରାକୃତ ଓ ଅପଭ୍ରଂଶ ଭାଷାର ଗାଉଁଲି ସ୍ୱରୂପ ପାଇଥାଉ । ଓଡ଼ିଆ ସାହିତ୍ୟ ଆଦିଯୁଗର ଭାଷାରେ ଗାଉଁଲି ଓଡ଼ିଆ ଭାଷାର ଯେଉଁ ଜୀବନ୍ତ ଓ ଛବିଳ ସ୍ୱରୂପ ଦେଖିବାକୁ ମିଳେ, ସେ ପ୍ରକାର ଭାଷା ବୈଚିତ୍ର୍ୟ ଆମେ ଜଗନ୍ନାଥ ଦାସଙ୍କ ଭାଗବତରେ ଦେଖିବାକୁ ପାଉନାହିଁ । ତଥାପି ଜଗନ୍ନାଥ ଦାସ ଲେଖିଛନ୍ତି ଯେ ସେ ପ୍ରାକୃତ ବନ୍ଧରେ ଭାଗବତ ଗ୍ରନ୍ଥ ରଚନା କଲେ—

"ପ୍ରାକୃତ ବନ୍ଧେ ଭାଗବତ<br>ପ୍ରକାଶି ସନ୍ଥ ଜନହିତ ।<br>କହଇ ଦାସ ଜଗନ୍ନାଥ<br>କୃଷ୍ଣ ଚରଣେ ଦେଇ ଚିତ୍ତ ।" (୧୧/୧୦)

ପୁଣି, "ପ୍ରାକୃତ ଭାଷା ଏ ପ୍ରବନ୍ଧ । ଫିଟେ ଅନ୍ଧାର ଭବବନ୍ଧ ।" (୧୦/୯୬)

ଏହିପରି ବହୁସ୍ଥାନରେ କବି "ଭାଗବତ ଗୀତା ପ୍ରବନ୍ଧ" ପ୍ରାକୃତ ଭାଷାରେ ରଚନା କରିଥିବାର କହିଅଛନ୍ତି । ଜଗନ୍ନାଥ ଦାସ ଭାଗବତ ପରି ବିରାଟ ଗ୍ରନ୍ଥକୁ ଓଡ଼ିଆ ଭାଷାରେ ଅନୁବାଦ କଲେ—ଅନୁବାଦ ସମୟରେ ଓ ଅନୁବାଦ ପରେ ମଧ୍ୟ ସଂସ୍କୃତପ୍ରେମୀ ପଣ୍ଡିତମାନେ ତାଙ୍କୁ ଅତି କଟୁ ସମାଲୋଚନା କରୁଥିଲେ । ପ୍ରବାଦ ଅଛି ଯେ ଏହି ଭାଗବତକୁ "ତେଲି ଭାଗବତ" ଭାବରେ କେତେକ ଲୋକ ସମାଲୋଚନା କରୁଥିଲେ । ବ୍ରାହ୍ମଣ ସମାଜରେ ଏଥିପାଇଁ ତାଙ୍କୁ ଅନେକ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଆଗରୁ କୁହାଯାଇଛି ଯେ ଭକ୍ତି ଧର୍ମର ବ୍ୟାପ୍ତି ଓ ପ୍ରସାର ପାଇଁ କେବଳ ଓଡ଼ିଆ କାହିଁକି ସମଗ୍ର ଭାରତର ବୈଷ୍ଣବ ଓ ଅନ୍ୟାନ୍ୟ ଭକ୍ତିଧର୍ମର ସାଧକବର୍ଗ ପ୍ରାକୃତ ଭାଷାକୁ ଗ୍ରହଣ କରି ନେଉଥିଲେ ସେମାନଙ୍କ ଗ୍ରନ୍ଥ ରଚନାର ମାଧ୍ୟମରୂପେ । ଅନ୍ୟଦିଗରେ ସଂସ୍କୃତ ଭାଷାକୁ ସମାଲୋଚନା, ତାଚ୍ଛଲ୍ୟ ଓ ବିଦ୍ରୂପ କରି ଓଡ଼ିଶାର ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପ୍ରଭୃତି ସଖାମାନେ ବିକୃତ ସଂସ୍କୃତ ମାଧ୍ୟମରେ ଲେଖିବସିଲେ ସେମାନଙ୍କର ଅନେକ ଧର୍ମଗ୍ରନ୍ଥ ଓ ଦାର୍ଶନିକ ସିଦ୍ଧାନ୍ତ ଗ୍ରନ୍ଥ । ଏହାର ବିବରଣୀ ସେମାନଙ୍କ ଗ୍ରନ୍ଥ ସମୂହର ଆଲୋଚନାରେ ଅନ୍ୟତ୍ର ଦିଆ-ଯାଇଛି । ଜଗନ୍ନାଥ ଦାସଙ୍କ ଭାଗବତ ଗ୍ରନ୍ଥ ଏହିସବୁ ଗ୍ରନ୍ଥ ମଧ୍ୟରେ ହେଲା ଏକ ସ୍ୱତନ୍ତ୍ର ଗ୍ରନ୍ଥ । ଏପରିକି ଜଗନ୍ନାଥଙ୍କର ଅନ୍ୟାନ୍ୟ ରଚନା ଓ ଭାଗବତ ଗ୍ରନ୍ଥର ଭାଷା ମଧ୍ୟରେ ଅନେକ ବିଭେଦ ଦେଖିବାକୁ ମିଳିଥାଏ ।

ସଂସ୍କୃତ ଭାଷା ଅନୁସରଣରେ ଭାଗବତର ଅନୁବାଦ ହୋଇଥିବାରୁ ଭାଗବତର ଭାଷା ମୁଖ୍ୟତଃ ହୋଇପଡ଼ିଛି ସଂସ୍କୃତାଭିମୁଖୀ । ଏହିଭାଷା ମୋଟ ଉପରେ ହୋଇଛି ସରଳ ତତ୍ସମ ମୂଳକ ଓଡ଼ିଆ ଭାଷା, ଯାହାକୁ କି ପଣ୍ଡିତ,

ଅପଣ୍ଡିତ ସମସ୍ତେ ବୁଝି ପାରିବେ । ତେଣୁ ବୁଦ୍ଧିମତ୍ତାର ସହିତ ଭାଗବତର ଅନୁବାଦରେ ଜଗନ୍ନାଥ ଦାସ ପରିହାର କଲେ ସାରଳା ବା ବଳରାମଙ୍କ ସାହିତ୍ୟର ବହୁ ଅପଭ୍ରଷ୍ଟ ଶବ୍ଦ ସମ୍ଭାର । ଭାଗବତର ଭାଷା ଏହିପରି ଭାବରେ ହେଲା ସର୍ବାଞ୍ଚଳ ଓଡ଼ିଶାର ଭାଷା । ଏହାକୁହିଁ ଆମେ କହିଥାଉଁ ଏକ "ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷା" । ଏଥିନିମିତ୍ତ ଭାଗବତର ଯେ କୌଣସ ପଦକୁ ଉଦାହରଣ ସ୍ୱରୂପ ଗ୍ରହଣ କରଯାଇପାରେ—

"ବିଷ୍ଣୁର ଅଭୟ ଚରଣ । ମଙ୍ଗଳ କୁଶଳ କଲ୍ୟାଣ ।"
"କର୍ମ ଆଦରି ସହେଦୁଃଖ । କେବେହେଁ ନୁହଇଁ ବିମୁଖ ।"
"ଆକାଶ ଯେହ୍ନେ ସର୍ବଶୂନ୍ୟ । ସେ ରୂପେ ହୋଇ ଉଦାସୀନ ।"
"ସେବା କରିବ ଦୃଢ଼ଚିତ୍ତ । ଶିକ୍ଷା ଯେ ଧର୍ମ ଭାଗବତ ।"
"ପତି ତନୟ ତାର ଦାସ । ଏସର୍ବ ବିଜୁଳି ପ୍ରକାଶ ।"

ଏହିପରି ଭାବରେ ଭାଗବତର ପ୍ରତ୍ୟେକ ପଦ ହୋଇଛି ସରଳ, ସର୍ବଜନବୋଧ୍ୟ, ସୁନିର୍ବାଚିତ ତତ୍ସମ ମୂଳକ ଶବ୍ଦ । ଏହି ଯୁଗରେ ଏପରି ସରଳ ତତ୍ସମମୂଳକ ଓଡ଼ିଆ ଶବ୍ଦରେ ରଚିତ ଗ୍ରନ୍ଥ ଖୁବ୍ କମ ଦେଖିବାକୁ ମିଳିଥାଏ । ମନେହୁଏ ଭାଗବତ ହେଉଛି ସେ ସମୟର ବିଶୁଦ୍ଧ ଓଡ଼ିଆ ଗ୍ରନ୍ଥ ଯାହା ଯାଲିସ୍ ଅଛିଲା ସଂସ୍କୃତି ପ୍ରେମୀ, ପଣ୍ଡିତ ଓ ଅନ୍ୟ ଦିଗରେ ପ୍ରାକୃତପ୍ରେମୀ ଓଡ଼ିଶାର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ ଜନସାଧାରଣଙ୍କ ମଧ୍ୟରେ । ତେଣୁ ଖୁବ ଅଳ୍ପ ସମୟ ମଧ୍ୟରେ ବହୁ ସମାଲୋଚନା ସତ୍ତ୍ୱେ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ କେବଳ ଲୋକପ୍ରିୟ ପୁରାଣ ହେଲାନାହିଁ—ହେଲା ଘରେ ଘରେ ପୂଜିତ—ସାକ୍ଷାତ୍ ଭଗବତ ବାସୁଦେବ, ବିଷ୍ଣୁ ଓ ଜଗନ୍ନାଥ ଭାବରେ ।

ତଥାପି ପୁରାଣ ଯୁଗର ପ୍ରଭାବକୁ ଜଗନ୍ନାଥ ଏଡ଼ି ପାରି ନାହାନ୍ତି । ଭାଗବତର ନବେ ଭାଗ ସରଳ ତତ୍ସମ ମୂଳକ ଓଡ଼ିଆ ହେଲେହେଁ ତହିଁରେ ୧୬ ଭାଗରୁ ଅଧିକ ରହିଛି ଅପଭ୍ରଷ୍ଟ ପ୍ରାଚୀନ ଓଡ଼ିଆ ଶବ୍ଦର ରୂପରେଖ । ତହିଁର କେତେକ ଉଦାହରଣ ହେଲା:—ଛନ୍ତି (ଅଛନ୍ତି) ଯେପରି ଯାବତଛନ୍ତି ଯଦୁବୀର ଆର, ଭିଆଇ, ପୃଥ୍ୱୀ, ପେଇ, ପରିମାଣି, ଶୁଣିତେ, ଜାଣିତେ, କୃତ କୃତ, କିସ, ଯର୍ଜିଲେ, ଘଟଣ, ଶୟନ, ଛନ୍ନ, ଧଡ଼ପଡ଼, ପାତିଲା, ଉତୁରି, ଉବୁଗି, ପ୍ରଘଟ, ଦୋରୁରୁଣୀ, ଇନ୍ଦ୍ରି, ଏଡ଼ି, ହେରି, ମାଇଁ, ମଉଳା, ସାମରଥୀ, ଗୃପିଲା, କରୁ-ଡ଼ିଲା, ଗୁହାରି (ଯାବନିକ ଶବ୍ଦ) 'ଭୂମିର ଦେଖିଣ ବିକଳ । ଗୁହାରି କଲେ ଦେବେକଳ'—(୧୦/୨), ଅପୁଅା .—"ଅପୁଆ ଘରେ ପୁଅଜାତ", ଢିକତା, ଅମୀୟ, ପଇତା, ଦେବଇଁ, ଗଡ଼ଘାଲି, ଝୁଣି, ଉଛୁଡ଼ି, ଭଣଜା, ସରିଯମ, ପଲା-ବନ୍ତି, କରେଣ, ଚିଆଇଂ, ତେଲହଳଦି, ଖେମଟାନାଚ, ଅଉଡ଼ିଆ, ଆକଟ, ସୁନିଆ ଆନସନ୍ଧା, ଝୀନପତନୀ, କାପ, ଝଣ୍ଟିର କୋକିଳ, ଖାଇକ, କେଶ, ଅନୁଡ଼ି, ଉଠିଆରୀ, ପାଡ଼ି (ପାତି), ଗୁଆଳି, ରାଇ (ଡାକି), ଗୁଳୁଘୁଞ୍ଚା, ଅଗଣା, ସାଉଟି, ଶିକା, ଦନା, କବାଟୀ, ଗମ୍ଭୀରି, ମୁତଇ (ମୂତ୍ର ତ୍ୟାଗ କରି), ପାଖ ପଡ଼ିଶା, ଫୁଟୁଲି (କଷ୍ଟ ପାଇବା), ଝଟ, ନିତଛାଳୀ, ଚୁଲ୍ଲୀ, ଶିଳୁପୁତା, ଦଡ଼ି, ପାଖୋଇ, କଠଉ, ମଯୁଣୀ, ମାଣ, ଉବୁରିଲା, ଅନ୍ନପୁତା, ବଗଡାଭାତ— "ବଗଡାଭାତ ସେ ଆଣିଲା । ବେଲ କଟଡା ଲୁଣ ଅଁଳା ।" (୧୦/୧୪) ଓଡ଼ିଆଣୀ (କଟୀରେ ରତ୍ନ ଓଡ଼ିଆଣୀ), ମହାଖୁଡ଼ (ପିଅଇ ନଳ ମହାଖୁଡ଼), ମୁହାଁସ ଆସ୍ତ (ତୁ କାହୁଁ ରଖିବୁ ଆସ୍ତନ) (୧୨/୩୦) ନିଶୁଣି ଇତ୍ୟାଦି ।

ଏହିସବୁ ଶବ୍ଦ ବ୍ୟତୀତ ଅନେକ ଗୁଡ଼ିଏ ଶବ୍ଦ ହୋଇଛି କବିଙ୍କର ପ୍ରିୟ । ଏହି ଶବ୍ଦଗୁଡିକ ସେ ଭାଗବତର ବିଭିନ୍ନ ସ୍ଥାନରେ ବହୁଳ ଭାବରେ ବ୍ୟବହାର କରିଅଛନ୍ତି, ଯଥା :—ଶୟଳ, ଆଗୁସାର, ନିଷେପି, ଉଭାରି, ବଳିଯାଉ, ଉଲ୍ଲୋଳ ନିସ୍ତରିଲି ଇତ୍ୟାଦି ।

ଭାଗବତର ବହୁପଦ ଓଡ଼ିଆରେ ପ୍ରବଚନ ହୋଇଗଲାଣି—ଆଗରୁ ସେ ସବୁର ଉଦାହରଣ ଦିଆଯାଇଛି—ଓଡ଼ିଆ ଲୋକଙ୍କର କଥା କଥାକେ ଭାଗବତ ପଦର ଉକ୍ତି—ଗାଁ କଣ ସହର କଣ ସବୁଠାରେ ହିଁ ଭାଗବତର ପଦ ଶୁଣିବାକୁ ମିଳିଥାଏ । କୌଣସି ଦୁଷ୍ଟଲୋକ ଶାସ୍ତି ପାଇବାରେ ଅନ୍ୟପକ୍ଷ କହିଥାଏ "ମଞ୍ଚାରୁ ପଡ଼ି ମାମୁଁ ମଲା, ମୋତେ ଗୋ ଦଇବ ରଖିଲା ।" ଏହିପରି ଭାଗବତ ବାଣୀ ଗୁଡ଼ିକର ଉଦାହରଣ ଅସଂଖ୍ୟ ।

ଓଡ଼ିଆ ଭାଷାତତ୍ତ୍ୱର ଗବେଷଣା ନିମିତ୍ତ ସାରଳା ମହାଭାରତ ବା ବଳରାମ ଦାସଙ୍କ ରାମାୟଣ ଯେପରି ପ୍ରଶସ୍ତ କ୍ଷେତ୍ର ଓ ଉପାଦାନବହୁଳ, ଭାଗବତ ସେପରି ନୁହେଁ । କାରଣ ଏହାର ଶବ୍ଦ ଭଣ୍ଡାର ବିଶେଷ ଭାବରେ ତତ୍ସମ ମୂଳକ । ଆମର କାବ୍ୟଯୁଗ ଭାଷାର ଭିତ୍ତି ସ୍ଥାପନ କଲା ପ୍ରଥମେ ଏହି ଭାଗବତ ଗ୍ରନ୍ଥ—ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର ପ୍ରଭାବ ବିଶେଷ ଭାବରେ ଭାଗବତର ରଚନା ସମୟରୁ ହିଁ ଉଦ୍ଭବ ହେଲା । ଭାଗବତର ପ୍ରତ୍ୟେକ ପଦହିଁ ଏହାର ଉଦାହରଣ । କବି ପ୍ରାକୃତ ଭାଷା ଓ ପ୍ରାକୃତ ବନ୍ଧରେ ଭାଗବତ ରଚନା କଲେ ହେଁ ତହିଁରେ ପ୍ରାକୃତ ଭାଷାର ଆଧିକ୍ୟ ସେତେ ଭାବରେ ଲକ୍ଷିତ ହୋଇ ନଥିଲା । ତଥାପି ଭାଗବତର ରଚନାଶୈଳୀ ଯୁଗେ ଯୁଗେ ଓଡ଼ିଆ କବି ଓ ଲେଖକଙ୍କର ଲେଖନୀକୁ ପ୍ରଭାବିତ କରିଆସିଲା ଏବଂ ଏବେ ବି ମଧ୍ୟ ଚାଲିଛି ।

———

# ଉତ୍କଳୀୟ ସଂସ୍କୃତି ଓ ଜଗନ୍ନାଥ ଦାସ

ଡକ୍ଟର କାହ୍ନୁଚରଣ ମିଶ୍ର

ଉତ୍କଳୀୟ ସଂସ୍କୃତିର ବିଶ୍ୱସ୍ତ ବାର୍ତ୍ତାବହ ରୂପେ ଯୋଗୀ ତଥା ମହାପୁରୁଷ ଜଗନ୍ନାଥ ଦାସ ଓଡ଼ିଶାର ପୁରପଲ୍ଲୀରେ ପରିଚିତ ଓ ସମ୍ମାନିତ । ଏ ସଂସ୍କୃତି ଆଧ୍ୟାତ୍ମିକତାରେ ରଂଜିତ, ତ୍ୟାଗପୂତ ସର୍ବାଧାର ତଥା ସମନ୍ୱୟମୂଳକ ଓ ଜଗତ ପୁରୁଷ ଜଗନ୍ନାଥ ଏହାର ପ୍ରାଣକେନ୍ଦ୍ର । ଜଗନ୍ନାଥ ସଂସ୍କୃତି ହିଁ ଯଥାର୍ଥରେ ଉତ୍କଳୀୟ ସଂସ୍କୃତି । ପରମ ସାଧକ ଜଗନ୍ନାଥ ଦାସଙ୍କ ଅଲୌକିକ ପ୍ରତିଭା, ବଳିଷ୍ଠ ବ୍ୟକ୍ତିତ୍ୱ, ନିରବଚ୍ଛିନ୍ନ ସାଧନା ଓ ଗଭୀର ଈଶ୍ୱରାନୁରକ୍ତି ଲକ୍ଷ୍ୟ କରି ତତ୍କାଳୀନ ସମାଜର ଲୋକେ ମନେ କରୁଥିଲେ ସତେ ଯେପରି ସେ ଜଗନ୍ନାଥ ଧର୍ମ ପ୍ରଚାର ଓ ପ୍ରସାର କରିବା ପାଇଁ ବିଭୁପ୍ରେରିତ ଭାବେ ପୁଣ୍ୟଧାମ ନୀଳାଚଳରେ ଅବତୀର୍ଣ୍ଣ ହୋଇ ଅଛନ୍ତି ।

ସେତେବେଳେ ଓଡ଼ିଶାର ରାଜନୈତିକ ଆକାଶ ଘୋର ତମସାଚ୍ଛନ୍ନ । ସାମାଜିକ ଅବସ୍ଥା ବିପର୍ଯ୍ୟସ୍ତ, ସାଂସ୍କୃତିକ ଜୀବନ ଦୁର୍ଦ୍ଦଶାଗ୍ରସ୍ତ । ଘନ ଘନ ମୁସଲମାନ ଆକ୍ରମଣର ଆଶଙ୍କାରେ ସମଗ୍ର ଦେଶ ଭୟଭୀତ । ଏହିପରି ଏକ ସନ୍ଧିକ୍ଷଣରେ ଭକ୍ତ ଜଗନ୍ନାଥ ଦାସଙ୍କ ଆବିର୍ଭାବ ଓ ତାଙ୍କ ପ୍ରତିଭାର ବିକାଶ । ସେ ଥିଲେ ଏକାଧାରରେ କବି, ଭକ୍ତ, ଯୋଗୀ ଓ ମହାପୁରୁଷ । ସନ୍ଥ ତୁଳସୀ ଦାସଙ୍କ ଭଳି ସେ ଦେଶର ଅଗଣିତ ନରନାରୀଙ୍କର ଅନ୍ତରାତ୍ମା ଅନ୍ତର୍ବେଦନା ହୃଦୟଙ୍ଗମ କରି ପାରିଥିଲେ । ଦେଶକୁ ସୁଶିକ୍ଷିତ, ସୁସଂସ୍କୃତ ଓ ଅକୁତୋଭୟ କରିବାଲାଗି ସେ ଆପ୍ରାଣ ଉଦ୍ୟମ କଲେ । ଲେଖିଲେ ଓଡ଼ିଆ ଭାଗବତ । ଏହି ଗୋଟିଏ ମାତ୍ର ଗ୍ରନ୍ଥ ଲେଖି ସେ ସମଗ୍ର ଦେଶବାସୀଙ୍କ ହୃଦୟରେ ଅଭୂତପୂର୍ବ ପ୍ରେରଣା, ନୈତିକତା, ଏକତ୍ୱବୋଧ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ସାରଳା ଦାସଙ୍କ ମହାଭାରତ ପରେ ଜଗନ୍ନାଥ ଦାସଙ୍କ ଭାଗବତ ଯଥାର୍ଥରେ ହେଲା ଏ ଜାତିର ଜାତୀୟ ଜୀବନର ବେଦ । ଜନତାର କବିରୂପେ ସେ ଅଶେଷ ସମ୍ମାନ ଲାଭକଲେ । ଆବାଳବୃଦ୍ଧବନିତା, ଜାତି-ଧର୍ମ-ନିର୍ବିଶେଷରେ ଏହି ଭାଗବତ ନିତ୍ୟ ପାରାୟଣ କରି ସ୍ୱ ସ୍ୱ ଜୀବନକୁ କେବଳ ଯେ ଧନ୍ୟ କଲେ ତାହା ନୁହେଁ ଆଧ୍ୟାତ୍ମିକ ମାର୍ଗରେ ଜୀବନକୁ ପରିଚାଳିତ କରିବାଲାଗି ସମୁଚିତ ପନ୍ଥାର ସଂକେତ ପାଇଲେ । ଏକ ବିରାଟ ଜାତିର ପ୍ରାଣରେ ଆତ୍ମବିଶ୍ୱାସ, ଧର୍ମଭାବ ଓ ଜାତୀୟ ପ୍ରେରଣା ତଥା ଜାତୀୟତା ସୃଷ୍ଟି କରିବାକୁ ଗଲେ ।

ପାରମାର୍ଥିକ ତତ୍ତ୍ୱର ଅବତାରଣା ସହିତ ବଳିଷ୍ଠ ବ୍ୟକ୍ତିତ୍ୱ ଗଠନର ପରିକଳ୍ପନାକୁ ଅବଲମ୍ବନ କରି ଏକ ସର୍ବଜନବୋଧ୍ୟ ଗ୍ରନ୍ଥ ପ୍ରଣୟନ କରିବା ଆବଶ୍ୟକ । ତେଣୁ ସେ ଅପୂର୍ବ ଗ୍ରନ୍ଥ ଓଡ଼ିଆ ଭାଗବତ ରଚନା କରି ଏକ ଅଭାବ ଦୂରୀକରଣରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ । ଜଗନ୍ନାଥ ଦାସଙ୍କ ଜୀବିତାବସ୍ଥାରେ ବୈଷ୍ଣବଧର୍ମର ପ୍ରଚାରକ ଶ୍ରୀ ଚୈତନ୍ୟ ଓଡ଼ିଶା ଆଗମନ କରିଥିଲେ । କଥିତ ଅଛି ଯେ ଜଗନ୍ନାଥ ମନ୍ଦିରାଭ୍ୟନ୍ତର ବଟଗଣେଶଙ୍କ ନିକଟରେ ଭାଗବତର ଦଶମ ସ୍କନ୍ଧର ବ୍ରହ୍ମସ୍ତୁତି ବ୍ୟାଖ୍ୟା କରୁଥିବାବେଳେ ଶ୍ରୀ ଚୈତନ୍ୟ ତାଙ୍କୁ ସେଠାରେ ସାକ୍ଷାତ କରିଥିଲେ । ମଣିକାଞ୍ଚନର ସଂଯୋଗ ହେଲାପରି ଜଗନ୍ନାଥ ଓ ଶ୍ରୀଚୈତନ୍ୟଙ୍କ ଏ ମଧୁର ମିଳନ ଅଭିନବ ଦୃଶ୍ୟ ସୃଷ୍ଟି କରିଥିଲା । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କଠାରେ ମହାପୁରୁଷର ଲକ୍ଷଣମାନ ଦର୍ଶନ କରି ପ୍ରେମ-ଭକ୍ତି-ରସରେ

ଗଦଗଦ ହୋଇ ତାଙ୍କୁ ଗଭୀର ଭାବରେ ଆଲିଙ୍ଗନ କଲେ ଏବଂ ତାଙ୍କଠାରେ ଅସାଧାରଣ ପାଣ୍ଡିତ୍ୟ କବିତ୍ୱ ଓ ଜଗନ୍ନାଥଙ୍କ ପ୍ରାଣତା ଦେଖି ତାଙ୍କୁ ପ୍ରଶଂସା କରିବାକୁ ଖାଲି ଲାଗିଲେ ତାହା ନୁହେଁ ତାଙ୍କ ପ୍ରାଣସଖା ଭାବରେ ମଧ୍ୟ ଗ୍ରହଣ କଲେ । କାଳକ୍ରମେ ଉଭୟ ଗୁରୁଶିଷ୍ୟ ମଧ୍ୟରେ ମହାମନ୍ତ୍ର ବିଗ୍ରହ ଓ କ୍ରମ ନେଇ ଦ୍ୱନ୍ଦ୍ୱ ଉପସ୍ଥିତ ହୁଏ । ଉତ୍କଳୀୟ ବୈଷ୍ଣବମାନେ ଜ୍ଞାନମିଶ୍ରା ଭକ୍ତିବାଦର ପୃଷ୍ଠ-ପୋଷକ ହେତୁ "ହରେ ରାମ କୃଷ୍ଣ" ମନ୍ତ୍ରର ଉପାସକ ।

ପ୍ରକାଶଥାଉକି ଗୌଡୀୟ ବୈଷ୍ଣବମାନେ "ହରେ କୃଷ୍ଣ ରାମ" ମନ୍ତ୍ରର ଉପାସକ । ଶ୍ରୀ ଚୈତନ୍ୟ ପ୍ରସଙ୍ଗକ୍ରମେ ଜଗନ୍ନାଥ ଦାସଙ୍କୁ "ହରେ କୃଷ୍ଣ ରାମ" ମନ୍ତ୍ର ଉପାସନା କରିବାକୁ ଆଦେଶ ଦେଲେ । ମାତ୍ର ଶିଷ୍ୟ ଜଗନ୍ନାଥ ଏଥିରେ ସମ୍ମତ ହେଲେ ନାହିଁ ଏବଂ କହିଲେ ଯେ ସ୍ୱୟଂ ଜଗନ୍ନାଥଙ୍କର ନିର୍ଦ୍ଦେଶକ୍ରମେ ସେ ହରେ ରାମ କୃଷ୍ଣ ମନ୍ତ୍ରର ଉପାସନାରେ ରତ । ଏହିପରି ମାନସିକ ଦ୍ୱନ୍ଦ୍ୱରେ ପଡ଼ି ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କର ଶରଣାପନ୍ନ ହେବାରୁ ସ୍ୱୟଂ ଜଗନ୍ନାଥ ଦେବ ସ୍ୱପ୍ନାବିଷ୍ଟ ହୋଇ ତାଙ୍କୁ କହିଲେ ଯେ ଭକ୍ତ ଜଗନ୍ନାଥ ଦାସ ଯେଉଁ ମନ୍ତ୍ର ସାଧନ କରୁଛନ୍ତି ତାହାହିଁ ତାଙ୍କର ଉପାସ୍ୟ ମନ୍ତ୍ର—ସେ ମନ୍ତ୍ର ବ୍ୟତୀତ ଅନ୍ୟ କୌଣସି ମନ୍ତ୍ରରେ ସେ ବିଳାସୀ ହେବେ ନାହିଁ । ନୀଳାଦ୍ରି-ବିହାରୀ ଜଗନ୍ନାଥଙ୍କର ଭକ୍ତ ଜଗନ୍ନାଥ ଦାସଙ୍କ ପ୍ରତି ଏପରି ଭାବ ଦେଖି ଚୈତନ୍ୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ତାଙ୍କୁ ଅତିବଡୀ ଆଖ୍ୟାରେ ଆଖ୍ୟାୟିତ କଲେ । ନିଜର ସ୍ୱାତନ୍ତ୍ର୍ୟ, ନିଜର ବୈଶିଷ୍ଟ୍ୟ ବଜାୟ ରଖିବାକୁ ଜଗନ୍ନାଥାଦି ଉତ୍କଳୀୟ ବୈଷ୍ଣବମାନେ କେବେ ନିଜର ଆଦର୍ଶରୁ ଅପସରି ଯାଇ ନାହାନ୍ତି । ଶ୍ରବଣ କୀର୍ତ୍ତନଠାରୁ ଆରମ୍ଭ କରି ଆତ୍ମନିବେଦନ ପର୍ଯ୍ୟନ୍ତ ନବଧା ମାର୍ଗରେ ବିଶ୍ୱାସୀ ହେଲେ ମଧ୍ୟ ଯନ୍ତ୍ର ମନ୍ତ୍ର ତନ୍ତ୍ର ଠାରୁ ଆରମ୍ଭ କରି ସମାଧି ପର୍ଯ୍ୟନ୍ତ ସାଧନ ମାର୍ଗ ଥିଲା ଏମାନଙ୍କର ଧ୍ୟେୟ । ଯୋଗ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଶରୀର ସାଧନା ସାଯୁଜ୍ୟ ମୁକ୍ତିରେ ଏମାନେ ବିଳାସୀ ହୋଇଥିଲେ ବୋଲି ରଚିତ ଗ୍ରନ୍ଥାଦିରେ ଏଗୁଡ଼ିକର ସ୍ପଷ୍ଟ ପରିଚୟ ମିଳେ । ସକାମ ନିଷ୍କାମ ସଗୁଣ ନିର୍ଗୁଣ ସାକାର ନିରାକାର ସକଳ ପ୍ରକାର ଧାରଣାରେ ଏମାନେ ଥିଲେ ସମନ୍ୱୟବାଦୀ । ଜଗନ୍ନାଥ ଧର୍ମ ଓ ସଂସ୍କୃତି ଯେପରି ସକଳ ଧର୍ମ ବିଶ୍ୱାସର ନିର୍ଯ୍ୟାସ ଯୋଗୀ ପ୍ରବର ଜଗନ୍ନାଥଙ୍କ ଧର୍ମ ଦର୍ଶନରେ ଏହି ସମନ୍ୱୟ ହିଁ ପ୍ରାଧାନ୍ୟ ଲାଭ କରିଥିଲା । ଗୃହସ୍ଥ ଧର୍ମକୁ ସେ ସଂଯମକୁ ପ୍ରଧାନ ଆଚରଣୀୟ ବସ୍ତୁ ଭାବରେ ଗ୍ରହଣ କରି ସ୍ୱକୀୟା ପ୍ରେମର ପରାକାଷ୍ଠା ଦର୍ଶାଇ ଅଛନ୍ତି । ହରିନାମ କୀର୍ତ୍ତନାଦି ସହ ନିଜର କର୍ତ୍ତବ୍ୟ ପରିପାଳନକୁ ସେ ପରମ ପନ୍ଥା ବୋଲି ନିର୍ଦ୍ଦେଶ କରିଅଛନ୍ତି । ବିଶେଷତଃ ଗୁରୁବାଦର ଶ୍ରେଷ୍ଠତ୍ୱ ସ୍ୱୀକାର ପୂର୍ବକ ଜନସାଧାରଣଙ୍କୁ ଏ ଗୁରୁବାଦରେ ବିଶ୍ୱାସୀ ହେବାକୁ ଉପଦେଶ ଦେଇ ଯାଇ ଅଛନ୍ତି । ଗୁରୁଦେବଙ୍କ ଧ୍ୟାନ ମନ୍ତ୍ର ପ୍ରଣାମ ଉପାସନାଦିରେ ତାଙ୍କର ଅତ୍ୟନ୍ତ ବିଶ୍ୱାସ ଥିଲା—ତେଣୁ ସେ କହିଛନ୍ତି —

"କନକ ରଚିର ଭାସଂ ଶୁକ୍ଳ ଗମ୍ଭୀର ହାସଂ
ମଧୁର ମଧୁର ବେଶଂ ପ୍ରେମ ନାମ ପ୍ରକାଶଂ
ସୁଜନ ପରମ ବନ୍ଧୁ ଦୀନ କାରୁଣ୍ୟ ସିନ୍ଧୁ
ତମିହ ମିହସୁ ବନ୍ଦେ ଶ୍ରୀଗୁରୁ ତ୍ୱଂ ପ୍ରପଦ୍ୟେ ।"

———

# ୧୯୭୪ ଓ ୭୫ ର
# କେତୋଟି ଉଲ୍ଲେଖଯୋଗ୍ୟ ଗ୍ରନ୍ଥ

| | ଗ୍ରନ୍ଥ | ଲେଖକ | ମୂଲ୍ୟ |
|---|---|---|---|
| ୧ । | କବିତା ଯୁଗେ ଯୁଗେ : | ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ | ୨୬·୦୦ |
| ୨ । | ଅଥବା ଅନ୍ଧାର : | ଯଦୁନାଥ ଦାସ ମହାପାତ୍ର | ୬·୦୦ |
| ୩ । | ଶ୍ରୀହରିଙ୍କ ସଂସାର : | ଗୋପାଳ ଛୋଟରାୟ | ୧୬·୦୦ |
| ୪ । | ବୈଷ୍ଣବ ପାଣି ଗ୍ରନ୍ଥାବଳୀ : | ଦ୍ୱିତୀୟ ଖଣ୍ଡ | ୨୨·୦୦ |
| ୫ । | ନଷ୍ଟ ଚରିତ୍ର : | ବିଭୂତି ପଟ୍ଟନାୟକ | ୧୩·୫୦ |
| ୬ । | ଅପୂର୍ଣ୍ଣ ଉପନିବେଶ : | ଚନ୍ଦ୍ରଶେଖର ରଥ | ୧୫·୦୦ |
| ୭ । | ଭଂଜୀୟ କାବ୍ୟ ଭାବନା : | ଡକ୍ଟର ବେଣୀମାଧବ ପାଢ଼ୀ | ୮·୦୦ |
| ୮ । | ଅରଣ୍ୟର ଚୂଳ : | ଶାନ୍ତନୁ କୁମାର ଆଚାର୍ଯ୍ୟ | ୧୦·୦୦ |
| ୯ । | ମୋର ଗଳ୍ପ : | ଯଦୁନାଥ ଦାଶ ମହାପାତ୍ର | ୭·୦୦ |
| ୧୦ । | ସୂର୍ଯ୍ୟ ଓ ଅନ୍ଧକାର : | ରାଧାମୋହନ ଗଡ଼ନାୟକ | ୬·୦୦ |
| ୧୧ । | ସାରଳା ମହାଭାରତର ସାମାଜିକ ଜୀବନ | ଡକ୍ଟର ଦୀନବନ୍ଧୁ ରଥ | ୨୨·୦୦ |
| ୧୨ । | ଅଘଟଣ ସଙ୍କଳନ : | ଚୌଧୁରୀ ହେମକାନ୍ତ ମିଶ୍ର | ୮·୫୦ |
| ୧୩ । | ସାହିତ୍ୟିକ ଅଭିଭାଷଣ : | ଉତ୍କଳ ସାହିତ୍ୟ ସମାଜ | ୧୦·୦୦ |
| ୧୪ । | ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ : | ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ | ୧୬·୦୦ |
| ୧୫ । | ଆବୁ ପୁରୁଷ ଓ ଅନ୍ୟାନ୍ୟ କାହାଣୀ : | ମନୋଜ ଦାସ | ୬·୦୦ |
| ୧୬ । | ମନ୍ଦିରର ବାଘ : | (ଜରବେଟ୍) ଓ ପ୍ରଫୁଲ୍ଲକୁମାର କର | ୧୩·୦୦ |
| ୧୭ । | ମାଟି କଣ୍ଢେଇ : | (ହିନ୍ଦି ଗଳ୍ପ) ରମବୃକ୍ଷ ବେନିପୁରୀ | ୬·୦୦ |
| ୧୮ । | ଦୁଇସେର ଧାନ । | ଟି. ଶିବଶଙ୍କର ପିଲ୍ଲାଇ | ୮·୦୦ |
| ୧୯ । | ଭାରତର ସ୍ୱାଧୀନତା ସଂଗ୍ରାମ : | (N B T) | ୬·୦୦ |
| ୨୦ । | ପ୍ରେମଚନ୍ଦ ଗଳ୍ପମାଳା : (N B T) | | ୬·୦୦ |
| ୨୧ । | ମୁଁ : (ମରାଠୀ ଉପନ୍ୟାସ) (N B T) | | ୭·୨୫ |
| ୨୨ । | ସ୍ୱାଧୀନତା ସଂଗ୍ରାମରେ କେନ୍ଦ୍ର ବ୍ୟବସ୍ଥାପକ ସଭାର ଭୂମିକା : (N B T) | | ୯·୦୦ |
| ୨୩ । | ତେଲଗୁ ଗଳ୍ପମାଳା : (N B T) | | ୧୩·୦୦ |
| ୨୪ । | ଭାରତର ସାପ : (N B T) | | ୧୦·୦୦ |

ପ୍ରକାଶକ ଓ ପ୍ରାପ୍ତିସ୍ଥାନ
**ଗ୍ରନ୍ଥମନ୍ଦିର**
କଟକ ଓ ବ୍ରହ୍ମପୁର

